ମହାପୁରୁଷ ଗୋବିନ୍ଦ ଅବଧୂତଙ୍କ ରଚିତ ।

# ରତ୍ନପାଦୁକା ।

ଅଧୁନା ସଂଶୋଧିତ ହୋଇ ।
ଶ୍ରୀ ଅଖିଳଚନ୍ଦ୍ର ଦାସଙ୍କ ଦ୍ୱାରା
ପ୍ରଥମବାର ପ୍ରକାଶିତ ।

କଟକ, ଅରୁଣୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ।



Printed by Nityauanda Sahoo
at the Arunodaya Press
CUTTACK
1927

ମୂଲ୍ୟ ଡ଼° ।/ ପାଞ୍ଚଅଣା ମାତ୍ର ।



# ରତ୍ନ ପାଦୁକା ।

## ପ୍ରଥମ ଅଧ୍ୟାୟ ।

ନମଇଁ ନୃସିଂହଚରଣ । ଯାହାର ଅନ୍ତ ନାହିଁ ପୁଣ ॥
ନମସ୍ତେ ବୈକୁଣ୍ଠ ବଦନ । ନମସ୍ତେ ଅରୁଣ ନୟନ ॥
ନମସ୍ତେ ଲକ୍ଷ୍ମୀ ତୋ ଚରଣେ । ସେବା ମୋ ରହୁ ଅନୁକ୍ଷଣେ ॥
ନମସ୍ତେ ହିରଣ୍ୟନାଶନ । ନମସ୍ତେ ଭକ୍ତଙ୍କୁ ରକ୍ଷଣ ॥
ଲକ୍ଷ୍ମୀ ନୃସିଂହଙ୍କ ଚରଣେ । ସେବା ମୋ ରହୁ ଅନୁକ୍ଷଣେ ॥
ନମସ୍ତେ ପ୍ରଭୁ ଜଗନ୍ନାଥ । ଅନାଥ ଲୋକଙ୍କର ନାଥ ॥
ନମସ୍ତେ ପ୍ରଭୁ ସଙ୍କର୍ଷଣ । ତୋର ଚରଣେ ରହୁ ମନ ॥
ନମସ୍ତେ ସୁଭଦ୍ରା ଗୋ ମାତଃ । ତୋର ଚରଣେ ରହୁ ଚିତ୍ତ ॥
ନମସ୍ତେ ପ୍ରଭୁ ଦିଗମ୍ବର । ତୋର ଶରୀରେ ଏ ସଂସାର ॥
ନମସ୍ତେ ହିମାଦ୍ରି ନନ୍ଦନା । ତୋ ପାଦେ କରଇଁ ଦଇନା ।୧୦।
ନମସ୍ତେ ପ୍ରଭୁ ଷଡ଼ାନନ । ଖଣ୍ଡୁ ସକଳ ପାପମାନ ॥
ନମସ୍ତେ ପ୍ରଭୁ ଲମ୍ବୋଦର । ନମସ୍ତେ ପ୍ରଭୁ ବିଘ୍ନେଶ୍ୱର ॥
ସମସ୍ତ ବିଘ୍ନ ଖଣ୍ଡୁ ତୁହି । ଏବେ ମୁଁ ପ୍ରାର୍ଥନା କରଇଁ ॥
ନମସ୍ତେ ନୃସିଂହଚରଣ । ମୋ ମନ ରହୁ ଅନୁକ୍ଷଣ ॥
ହେ ପ୍ରଭୁ ଦୟା କର ମୋତେ । ପଦ ରଚିବି ହୃଦଗତେ ॥
ତୁମ୍ଭ ଚରଣେ ଚିତ୍ତ ନିତ୍ୟ । ନମୋ ଗୋବିନ୍ଦ ଅବଧୂତ ॥
ଉଦ୍ଧବ ଦ୍ୱାରକାରୁ ଯାଇ । କେମନ୍ତେ ତପ ସେ କରଇ ॥
ଏ କଥା ମନେ ଉଦେ ହେବ । ନୃସିଂହ ଦୟା ଯେବେ ଥିବ ॥

ଏ ଦୋଷ ନ ଧର ସୁଜ୍ଞାନ । ତୁମ୍ଭର ପାଦରେ ଦଇଣା ॥

## ପରୀକ୍ଷିତ ଉବାଚ ।

ଶୁଣି ରାଜନ ପୁଚ୍ଛା କଲା । ଭୋ ମୁନି କହ ହେ ବୋଇଲା ॥
ହେ ବ୍ୟାସସୁତ କହ ମୋତେ । ସଂଶୟ ଲାଗିଲା ହୃଦରେ । ୨୯ ।
ଉଦ୍ଧବ ବଦରିକା ଗଲା । କେମନ୍ତେ ତପ ସେହୁ କଲା ॥
ରତ୍ନପାଦୁକା କସ ହୋଇ । କହିବ ମୁନି ହେ ବୁଝାଇ ॥
କେମନ୍ତେ ଆରାଧନା କରି । ତପେ ତୋଷିଲା ନରହରି ॥
କେମନ୍ତେ ଆସନେ ବସିଣ । କେମନ୍ତ ଧାରଣା ଧିଆନ ॥
ଏ କଥା କହ ମୁନି ମୋତେ । ନମଇଁ ତୋର ପାଦଗତେ ॥

## ଶ୍ରୀ ଶୁକ ଉବାଚ ।

ପ୍ରଣଂସି କହେ ଶୁକ ମୁନି । ଶୁଣ ରାଜନ ମହାଜ୍ଞାନି ॥
ଉଦ୍ଧବ କୃଷ୍ଣପାଦ ଧରି । ଗଲା ସେ ବଦରିକାପୁରୀ ॥
ସେ ସ୍ଥାନ ବଚନ ଅଟଇ । ପୃଥ୍ୱୀର ତାତ୍ତ୍ୱ ତାକୁ କହି ॥
ଉଦ୍ଧବ ଯାନ୍ତି ଧୀରେ ଧୀରେ । ଯାଇଁ ମିଳିଲେ ଗଙ୍ଗାତୀରେ ॥
ଗଙ୍ଗାରେ ସ୍ନାହାନ ସେ କଲା । ସକଳ ପାପ କ୍ଷୟ ଗଲା । ୩୯ ।
ତହୁଁ ସେ କଲାକ ଗମନ । ମିଳିଲା ବଦ୍ରିକାର ସ୍ଥାନ ॥
ସେ ସ୍ଥାନ କହି ତ ନ ପାରି । ଯହିଁକି ଚନ୍ଦ୍ର ସୂର୍ଯ୍ୟ ଡରି ॥
ଦୁଷ୍ଟ ଅସୁର ନ ଗମଇ । ସେ ସ୍ଥାନେ ନାରାୟଣ ଥାଇ ॥
ସମସ୍ତ ତପୀ ତହିଁ ଥାନ୍ତି । ଦେବତା ପ୍ରାୟ ସେ ଦିଶନ୍ତି ॥
ଏମନ୍ତ ପ୍ରକାର ସେ ସ୍ଥାନ । ବିଧାତା କରିଛି ଭିଆଣ ॥
ସେ ସ୍ଥାନେ ଉଦ୍ଧବ ଗମିଲା । ଦେଖିଣ ଆନନ୍ଦ ହୋଇଲା ॥
ଶ୍ୱେତ ଯେ ବଟ ତହିଁ ଅଛି । ତା ଉପଲକ୍ଷେ ନାହିଁ କିଛି ॥
ଉଦ୍ଧବ ସେ ବଟର ତଳେ । ବସିଲା ଆସନ ନିଶ୍ଚଳେ ॥
ବଦରି ନାରାୟଣ ସ୍ଥାନେ । ବସି ଆନନ୍ଦ ଯୋଗଧ୍ୟାନେ ।୪୦।
ଆସନ ମନ୍ତ୍ର ସେ ପଢ଼ିଲା । ଦ୍ୱିଜଙ୍କୁ ପଦ ନ୍ୟାସ କଲା ॥

ତୃତୀୟେ କଲା ଅଙ୍ଗ ନ୍ୟାସ । ଚତୁର୍ଥେ ମାତୃକା ପ୍ରବେଶ ॥
ପଞ୍ଚମେ ଭୂତ ଶୁଦ୍ଧି କଲା । ନମଗ୍ନ ହୋଇଣ ବସିଲା ॥
କୃଷ୍ଣର କଥା ମନେ କରି । ପାଦୁକାଠାରେ ଚତ୍ତ ଭରି ॥
ହଂସମନ୍ତ୍ରକୁ ସୁମରିଲା । ପାଦୁକା ତଳେ ଧାନ ଦେଲା ॥
ମନ୍ତ୍ରରେ ମସ୍ତକୁଁ କାଢ଼ିଲା । ଭୂମିରେ ଆଣି ତା ସ୍ଥାପିଲା ॥
ମନ୍ତ୍ରେ ଅନେକ ପୂଜା କରି । ଭାବେ ତୋଷିଲା ନରହରି ॥
ପୁଣି ସେ ଧାନବଳେ ନେଇ । ମସ୍ତକ ଉପରେ ରଖାଇ ॥
ଯୋଗ ଆସନ ଦୃଢ଼େ ଧରି । ଆପଣା ଅଙ୍ଗ ନ୍ୟାସ କରି ॥
ନିଶ୍ଚିନ୍ତେ ବସିଲା ମଉନେ । ପବନ ତୋଳେ ତତକ୍ଷଣେ ।୫୦।
ଗୁହ୍ୟକମଳଦ୍ୱାରେ ଥୋଇ । ଲିଙ୍ଗକମଳେ ତା ଉଠଇ ॥
ସେଠାରୁ ପବନ ତୋଳିଲା । ନାଭିକମଳେ ଠାବ ଦେଲା ॥
ପୁଣି ସେଠାରୁ ତୋଳି ନେଲା । ହୃଦୟକମଳେ ରଖିଲା ॥
ପୁଣିହିଁ ତୋଳିଲା ସେଠାଇଁ । କଣ୍ଠକମଳେ ରଖେ ନେଇ ॥
ସେଠାରେ ଘଣ୍ଟାନାଦ ସ୍ୱନ । ଶୁଣି ହୋଇଲା ତୋଷମନ ॥
ପୁଣି ସେଠାରୁ ତୋଳି ନେଲା । ଲଲାଟଚକ୍ରରେ ରଖିଲା ॥
ଯେସନେ ଦେଉଳଶିଖର । ପାଷାଣେ ତୋଳି ଦେଇ ଧୀର ॥
ପାବଚ୍ଛ ପାବଚ୍ଛକେ ଯାଇ । ଯେସନେ ଶିଖରେ ଉଠଇ ॥
ଏରୂପେ ପବନ ତୋଳିଲା । ଜ୍ୟୋତିମଣ୍ଡଳେ ସେ ରଖିଲା ॥
ଧୀରେ ସେ ରହିଲା ନିଶ୍ଚଳେ । ଯେସନ୍ତେ ପ୍ରତିମା ସେ ନ ଚଳେ ॥
ଚନ୍ଦ୍ର ସୂର୍ଯ୍ୟଙ୍କୁ ଏକ କଲା । ଜ୍ୟୋତିମଣ୍ଡଳେ ସେ ରହିଲା ॥
ଅଣଗୃଣର ପବନକୁ । ଧୀରରେ ନରୋଧିଲା ତାକୁ ॥
ନୟନ ଧୀରରେ ରଖିଲା । ନାସା ଅଗ୍ରକୁ ଦୃଷ୍ଟି ଦେଲା ॥
କାଷ୍ଠପିତୁଳୀ ଯେସନ୍ତେ ଥାଇ । ନରେଖି ଅନାଇଁ ବସଇ ॥
ତାହାର ପ୍ରାୟକ ନୟନ । ରଖି ହୋଇଲା ତୋଷମନ ॥
ମନକୁ ଧୀରରେ ରଖିଲା । ବକ ଆକାର ସେହ୍ନ କଲା ॥
ଯେସନେ ଜଳେ ବକ ଥାଇ । ନିଶ୍ଚଳ ଜଳେ ଧୀର ହୋଇ ॥
ମୀନକୁ ଧରିବାର ପାଇଁ । ଯେସନ୍ତେ ନୟନ ନ ଚଳଇ ॥

ମନକୁ ବକ ସେହୁ କଲା । ପାଣି ଯେ ସିନ୍ଧୁଜଳ ହେଲା ॥
ପବନ ମୀନଟି ହୋଇଲା । ବକଟି ତାହାକୁ ଧରିଲା ।୭୦।
ଧୀରରେ ସମାଧି ଲଗାଇ । ନିରେଖି ଅଛଇ ଅନାଇଁ ॥
ଭକ୍ତିରେ ଗଦ ଗଦ ହୋଇ । ପରମ ବିଜେ କଲେ ତହିଁ ॥
ଶୂନ୍ୟଶିଖରେ ସେ ରହିଲେ । ଭକ୍ତକୁ ରୂପ ଦେଖାଇଲେ ॥
ପୁଣି ତା ଭକ୍ତି ଚଢ଼େ ଧର । ସେ ତ ଦିଶିଲେ ନରହର ॥
ପୁଣି ସେ ପୂର୍ଣ୍ଣିମୀର ପ୍ରାୟ । ଦିଶିଲା ଦେହ ଜ୍ୟୋତିମୟ ॥
ଏମନ୍ତେ ଥାଇ ଶୂନ୍ୟପୁରେ । ରୂପ ଦିଶିଲା ତା ଭିତରେ ॥
ଉଦ୍ଧବ ସମାଧିରେ ଥାଇ । ରୂପକୁ ନୟନେ ଦେଖଇ ॥
ପୁଣି ସେ ବିଚାରଇ ମନେ । ଏ ଶୂନ୍ୟେ ରହିଲେ କେସନେ ॥
ଏହାର ନାମ ଅଟେ କିସ । କେମନ୍ତେ ଜାଣିବା ସନ୍ଦେଶ ॥
ଏମନ୍ତ ମନେ ବିଚାରଇ । ନୟନପଥରେ ଅନାଇଁ ।୮୦।
ଦେଖିଲା ଦିବ୍ୟମୟ ଜ୍ୟୋତି । କୋଟି କନ୍ଦର୍ପ ନ ଟଳନ୍ତି ॥
କିରୀଟ ଶୋଭଇ ମସ୍ତକେ । ଝଲକା ଲମ୍ବେ ଗୁରୁଂପାଖେ ॥
ଚିତାକୁ ଉପମା ତ ନାହିଁ । ମେରୁଶୃଙ୍ଗ ତ ନ ଘଟଇ ॥
ଭ୍ରୂଲତା କାମ ଚାପପ୍ରାୟ । ନାସିକା ତିଳପୁଷ୍ପ ପ୍ରାୟ ॥
କର୍ଣ୍ଣକୁ ପଟାନ୍ତର ନାହିଁ । କୁଣ୍ଡଳ ସୂର୍ଯ୍ୟକୁ ଜିଣଇ ॥
ନୟନ ଚନ୍ଦ୍ର ସୂର୍ଯ୍ୟ ନିନ୍ଦ । ଯହିଁ ଭକତଚିତ୍ତ ବନ୍ଧ ॥
ଅଧର ବିମ୍ବ ଫଳକାନ୍ତି । ଦନ୍ତ କି ମୁକୁତାର ପନ୍ତି ॥
କୌସ୍ତୁଭ ମଣି କଣ୍ଠେ ଶୋଭେ । ଶମ୍ଭାକରଣ ଗର୍ବ ଦହେ ॥
ପୁଣି ଉପରେ ମୁକ୍ତାହାର । ନକ୍ଷତ୍ର ରହେ କି ଶୂନ୍ୟର ॥
ବାହୁ କି ମର୍କତର କୁନ୍ଦ । ପାପୁଲି ରକ୍ତ ଅରବିନ୍ଦ ।୯୦।
ଚୃବେଷ୍ଟି ଭୁଜ ଶୋଭା ପାନ୍ତି । ଶଙ୍ଖ ଚକ୍ରହିଁ ଧରଛନ୍ତି ॥
ଆବର ଗଦା ପଦ୍ମ ଶୋଭେ । ଦୈତ୍ୟ ଦାନବ ପ୍ରାଣ ଦହେ ॥
ଶ୍ରୀବତ୍ସଲାଞ୍ଛନର ଚିହ୍ନ । ହୃଦେ ହୋଇଛି ଶୋଭବନ ॥
କଟିକି ନାହିଁ ପଟାନ୍ତର । ସିଂହ ମଧ୍ୟା ବା କି ବା ଛାର ॥
ନୀଳ ଶ୍ରୀଅଙ୍ଗ ନୋହେ କଳ । କଟିରେ ପୀତପଟ ଝଳ ॥

ଜାନୁଙ୍କୁ ଉପମା ଯେ ନାହିଁ । ଉଲଟ ରମ୍ଭା ନ ଘଟଇ ॥
ପଦ୍ମତଳର ହେମର ନୂପୁର । ସୁନ୍ଦରେ ମୋହୁଛି ସଂସାର ॥
ଚରଣ ଦ୍ରବ୍ୟ ଶୋଭା ପାଇ । ଉଦୟ ଭାନୁ ନ ଶୋଭଇ ॥
ଏମନ୍ତ ରୂପ ଶୂନ୍ୟେ ଦେଖି । ଉଦ୍ଧବ ମନେ ହୁଏ ତୋଷୀ ॥
ରବି ଶଶାଙ୍କ ସମ ନୁହେ । ଦେଖିଲା ଯେଉଁ ତେଜୋମୟେ ॥
ଆନନ୍ଦେ ହୋଇ ଗଦ ଗଦ । ନମିଲା ଗୋବିନ୍ଦର ପାଦ ।

ଶୁକ କହନ୍ତି ପରୀକ୍ଷିତ୍ତ । ଯା ପୁଛିଥିଲ ହେ ଅମ୍ଭଙ୍କୁ ॥
ସେ କଥା ଶୁଣ ମନ ଦେଇ । କହିବା ସମସ୍ତ ବୁଝାଇ ॥
ଶୁଣି ସ୍ୱଜନ ପୂଜା କଲା । ବହୁତ ଧନ ରତ୍ନ ଦେଲା ॥
ନୈବେଦ୍ୟ ଧୂପ ଦୀପ ଦେଇ । ମୁନିଙ୍କ ପଦ୍ମର ପୂଜଇ ॥
ବହୁତ ସ୍ତୁତି ସ୍ୱଜା କଲା । ଏମନ୍ତ ବଚନ ବୋଇଲା ॥
ଉଦ୍ଧବ ଯେତେ କର୍ମ କଲା । ଏ କଥା ବହୁତ ହୋଇଲା ॥
ସୁଜନେ ଶୁଣ ମନ ଦେଇ । ଶ୍ରୀ ଶୁକ ସ୍ୱଜା ଆଗେ କହି ॥
ମୁଁ ତାହା କହିବଇଁ କିପ । ସୁଜନେ ନ ଧରିବା ଦୋଷ ॥
ଶୁଣ ସୁଜ୍ଞାନ ବିଦ୍ବଜ୍ଜନ । କହିବା ଗୁରୁବଂଶଗୁଣ ।

ପ୍ରଥମେ ମହାଶୂନ୍ୟେ ଜାତ । ଅଲେଖାନନ୍ଦ ଅବଧୂତ ॥
ତାହାଙ୍କ ଶିଷ୍ୟଙ୍କ ବୃତ୍ତାନ୍ତ । ଯେ ଅଭ୍ୟାଗତ ଅବଧୂତ ॥
ଯେ ଜ୍ଞାନସାଗରକୁ ଦେଲେ । ତାହାଙ୍କ ଶିଷ୍ୟ ପୁଣି ଥିଲେ ॥
ସହଜାନନ୍ଦ ଅବଧୂତ । ସେ ଆଦ୍ୟ ଏଣେ ହେଲେ ତନ୍ତ୍ର ॥
ତାହାଙ୍କ ନିଜ ଗୁଣ ନେଇ । ଅଞ୍ଚଳ ଅବଧୂତ କହି ॥
ସେ ଜ୍ଞାନ ଦେଲେ ଯେ ଗିରିକ । ସ୍ୱର୍ଗନନ୍ଦନ ଶିଷ୍ୟ ଲେଖି ॥
ସେହୁ ପରମହଂସ କଲେ । ତାହାକୁ ବ୍ରହ୍ମ ଶିକ୍ଷା ଦେଲେ ॥
ଯେ ବ୍ରହ୍ମଜ୍ଞାନ ପାଇ ଦୀକ୍ଷା । ନିରାକାରଙ୍କୁ କଲେ ଶିକ୍ଷା ॥
ସେ ନିରାକାର ଅବଧୂତ । ସାଧୁସ୍ୱଜନେ ଦେଲେ ତନ୍ତ୍ର ॥
ତାହାଙ୍କ ଶିଷ୍ୟ ଅନୁଗତ । ଯେ ନିରଞ୍ଜନ ଅବଧୂତ ।

ତାଙ୍କ ମହିମା ଅଦ୍ଭୁତ । ଅରୂପାନନ୍ଦ ଜ୍ଞାନ ତନ୍ତ୍ର ॥
ସହଜାନନ୍ଦ ଅବଧୂତ । ସମସ୍ତ ସ୍ୱମେ ଦେଲେ ତନ୍ତ୍ର ॥

ସମସ୍ତ ସମ ଅବଧୂତ । ସେ ସାକ୍ଷା କଲେକ ବିଖ୍ୟାତ ॥
ତାହାଙ୍କ ଶିଷ୍ୟଙ୍କର ନାମ । ଲକ୍ଷିତା ଅବଧୂତ ଜାଣ ॥
ସେ ହୃଦେ ବ୍ୟାସ ଆରମ୍ଭିଲେ । କୃଷ୍ଣାବଧୂତେ ଶିକ୍ଷା ଦେଲେ ॥
କୃଷ୍ଣ ବଧୂତଙ୍କ ମହିମା । କେ ମୁଖେ କହୁ ଗୁଣସୀମା ॥
ସେହୁ ଶାସ୍ତ୍ରକୁ ଭିଆଇଲେ । ତନ୍ତ୍ର ସଂହିତା ପାଠ କଲେ ॥
ସାରଉଦ୍ଧାର ଗୀତା କଲେ । ଅବର ଯୋଗାନ୍ତ ଖଞ୍ଜିଲେ ॥
ଏମନ୍ତେ ଗୁରୁ ଯେ ଅଠର । ଯମ୍ବଧାମରେ ଅବତାର ॥
ଏରୂପେ ସେ ପ୍ରଭୁ ଅଛନ୍ତି । ସେ ଶିକ୍ଷାମତରେ ଚଳନ୍ତି ॥
ଏମନ୍ତେ ଗୁରୁ ମୋର ଯେତେ । ଅଠର ପୀଢ଼ି ଏ ଜଗତେ ॥
ମୁଁ ତାଙ୍କ ଶିକ୍ଷାକୁ ନ ନେଲି । ମୂରୁଖ ପଣେ ହେଳ ନେଲି ॥
ଶାସ୍ତ୍ରମାନଙ୍କୁ ନ ପଢ଼ିଲି । ଗୁରୁଙ୍କ ଆଜ୍ଞାକୁ ନ କଲି ॥
ନ ଧର ମୋର ଅସଙ୍ଗତ । ନମୋ ଗୋବିନ୍ଦ ଅବଧୂତ ॥
ଶୁକ ପରୀକ୍ଷିତ ସମ୍ବାଦ । ଶୁଣନ୍ତେ ଖଣ୍ଡଇ ବିଷାଦ ।୧୩୫।

ଇତି ଶ୍ରୀ ରତ୍ନପାଦୁକା ଶୁକପରୀକ୍ଷିତ ସମ୍ବାଦେ ଉଦ୍ଧବଯୋଗଧ୍ୟାନେ ରତ୍ନପାଦୁକାପ୍ରସଙ୍ଗେ ନାମ ପ୍ରଥମୋଽଧ୍ୟାୟଃ ।



# ଦ୍ୱିତୀୟ ଅଧ୍ୟାୟ ।

## ଶ୍ରୀ ଶୁକ ଉବାଚ ।

ପାଦପଦ୍ମରେ ଉଦ୍ଧବ ଲଗାଇଲା ମତି । ନାରାୟଣଙ୍କୁ ଗୃହିଁଣ ଆରମ୍ଭିଲା ସ୍ତୁତି ॥ ନମସ୍ତେ ହେ ନାରାୟଣ ନର୍କଉଦ୍ଧାରଣ । ହୃଦେ ଧଇଲ ଶ୍ରୀବତ୍ସପାଦର ଲାଞ୍ଛନ ॥ ନମସ୍ତେ ନମସ୍ତେ ପ୍ରଭୁ ଲକ୍ଷ୍ମୀ ପ୍ରାଣନାଥ । ନମସ୍ତେ ଜଗତକର୍ତ୍ତା କର ଅତି ଯାତ ॥ ନମସ୍ତେ ବିଷ୍ଣୁର ପାଦ ବିଷ୍ଣୁଗର୍ଭ ତୋର । ଏ ସଂସାରେ ଯାହାର ଯେ ବରଜେ ଶରୀର ॥ ତୁମ୍ଭ ସେ ପ୍ରାଣୀମାନଙ୍କେ ପ୍ରେମରୂପେ ବସୁ । ତୋତେ ଚିନ୍ତା କଲେ କାଳମାସୁ

ମୋହ ଧ୍ୱଂସ ॥ ତୁ ଥାଉ ସକଳ ପ୍ରାଣିମାନଙ୍କ ଦେହରେ । ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଆଦରେ ॥ ନମୋ ନୀଳାମ୍ବର ନମୋ ଦାଶରଥି । ସାତ ତାଳ ଚକ୍ର ରଖୁ ଉନତଯ୍ୟ ପକ୍ଷୀ ॥ ନମୋ ନାରାୟଣ ପ୍ରଭୁ ଦଶ ରୂପ ଧରି । ମୀନ କୂର୍ମ ବରାହ ଯେ ନୃସିଂହାବତାର ॥ ବାମନ ପରଶୁ-ରାମ କୃଷ୍ଣ ହଳଧର । ନମୋ ବଉଦ୍ଧ କଳକୀ ରୂପ ଯେ ତୋହର ॥ ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜେ ଶୋଭେ । ଦେବ ଦାନବ ମାନବ ଭଯ୍ୟ ପାନ୍ତି ସର୍ବେ । ୧୦ । କାଳାନ୍ତକ ରୂପ ତୁହି ବହୁ ନରହରି । ଦୈତ୍ୟ-ନାଶନେ ତୋ ନାମ ଅଟେ ଦଇତାରି ॥ ବେଦ ଉଦ୍ଧାର କରିଲୁ ମୀନରୂପ ଧରି । ବେଦବ୍ରହ୍ମାଙ୍କ ଆରତ ଫେଡ଼ିଲୁ ଶ୍ରୀହରି ॥ ସଂସାର ଅଟଇ ତୋର ଖେଳଘର ଜାଣ । ଉତ୍ପତ୍ତି ପ୍ରଳୟ ତୁହି କରୁ ପୁଣ ପୁଣ ॥ ନମୋ ନାରାୟଣ ପ୍ରଭୁ ପ୍ରଳୟାଧିକାରି । ବଟପତ୍ରେ ଶୟନ ତୋ ବାଳ ରୂପ ଧରି ॥ କାଳମାୟାକୁ ସର୍ବଦା ରଖିଥାଉ ପାଶ । ପୂର୍ଣ୍ଣିହିଁ ତୁ କେତେ ଦିନେ ହେଉ ଶୂନ୍ୟବାସ ॥ କାଳମାୟା ତୋ ଶରୀରୁଁ ପୁଣ ଜାତ ହୋଇ । ସୃଷ୍ଟିକୁ ଭିଆଣ କରୁ ନାଥ ଶୂନ୍ୟେ ଥାଇ ॥ ରୁଦ୍ର ତୋହର ଲଲାଟୁଁ ହୋଇଛି ଉତ୍ପନ୍ନ । ଯାହାର ଶକ୍ତିରେ ହୁଏ ସଂସାର ଗହନ ॥ ନୟନୁ ତୋହର ଚନ୍ଦ୍ର ସୂର୍ଯ୍ୟ ହେଲେ ଜାତ । ବ୍ରହ୍ମାଣ୍ଡ ସାଗରେ ଏକୁ ହୋନ୍ତି ଅଗ୍ନିଯାତ ॥ ନାଭିରୁ ଯେ ବ୍ରହ୍ମ ଜାତ କଣ୍ଠୁ ବୃଦ୍ଧମାତା । ଧବଳାଙ୍ଗୀ ଶ୍ରୀଚରଣୁ ହୋଇଲେ ସମ୍ଭୂତା ॥ ତୋରମୁଖରୁ ଦେବତା ନାସାରୁ ମରୁତ ॥ ବସ୍ତ୍ର ଆଦ ଗୃହ ଜାତ ତୋ ଦେହୁଁ ସମ୍ଭୂତ ।୨୦। ଭକତ ଜନତାରଣ ଦୁଃଖିଦୁଃଖହାରି । କଂସ କେଶୀ ନିବାରିଲୁ ଗୋପେ ଅବତରି ॥ ଗୋପୀଙ୍କ ଜୀବନ ପ୍ରଭୁ ରାଧାପ୍ରାଣପତି । ନମସ୍ତେ ଗୋପୀବଲ୍ଲଭ ଜୟ ଯଦୁପତି ॥ ମାତା ପିତା ଉଦ୍ଧରିଲ କଂସପ୍ରାଣ ହରି । ମଥୁରାଦାଣ୍ଡେ କୁବ୍ଜାକୁ କଲ ପରଶୁରି ॥ ଦ୍ରୌପଦୀ ଆର୍ତ୍ତେ ଡାକିଲା କୁରୁସଭାତଳେ । କୋଟି ବସ୍ତ୍ର ଦେଇ ରକ୍ଷା କଲ ଅବହେଳେ ॥ ଗଜ ଉଦ୍ଧରି ଅହଲ୍ୟା ଶାପରୁ ତାରିଲ । ବାଳୀ ମାରି ସୁଗ୍ରୀବକୁ ରାଜା କରିଦେଲ ॥ ଜାନକୀ-ଛଳେ ରାବଣବଂଶ ସଂହାରିଲ । ବିଭୀଷଣକୁ ଲଙ୍କାରେ ରାଜା କରି-ଦେଲ ॥ ଜରାସନ୍ଧ ମାରି ବନ୍ଦି ରାଜା ଦେଲ ତାରି । ଧନ୍ୟ ମହିମାସାଗର

ଭକ୍ତଦୁଃଖହାରି ॥ ଶ୍ରୀଗୋପାଳଚୂଡ଼ାମଣି ଜୟ ଚକ୍ରପାଣି । କୃପାସିନ୍ଧୁ ଦୀନବନ୍ଧୁ ଭକ୍ତଚିନ୍ତାମଣି ॥ ଶ୍ରୀପତି ଗୋବିନ୍ଦ ହରି ଗୋବର୍ଦ୍ଧନଧାରି । ଦାନବ ମଧୁକୈଟଭ ପ୍ରାଣ ଅନ୍ତକାରି ॥ ଅନନ୍ତ ମାଧବ ହରି ପ୍ରଭୁ ଦଇତ୍ୟାରି । ହୃଷୀକେଶ ପୀତାମ୍ବର ମାଧବ ମୁରାରି । ୩୦ । ଚକ୍ରପାଣି ନାମ ତୋର ସୁଦର୍ଶନଧାରି । କୃଷ୍ଣ ଗୋପାଳ ଗୋବିନ୍ଦ ଦଶଶିର ଅରି ॥ ଚତୁର୍ଭୁଜ ମହାବାହୁ ପ୍ରଭୁ ଭଗବାନ । ଅନନ୍ତ ନାମକୁ ଅନ୍ତ କେ କରିବ ପୁଣ ॥ ଦ୍ୱାରକାବାସୀ ରୁକ୍ମିଣୀ ଦେବୀ ପ୍ରାଣନାଥ । ନମସ୍ତେ ହେ ନାରାୟଣ ପ୍ରାଣୀ ପଞ୍ଚଭୂତ ॥ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ଜୀବଜନ୍ତୁ ଯେତେ । ତୋର ଗର୍ଭେ ରହିଛନ୍ତି ଏ ଆଦି ସମସ୍ତେ ॥ ନମୋ ନମୋ ନାରାୟଣ ଦୟାର ସାଗର । କେଡ଼େ ସୁନ୍ଦର ଦିଶଇ ନୀଳ କଳେବର ॥ ଏ ତୋହର ସୁପ୍ରସନ୍ନ ବଦନକୁ ଦେଖି । ପିଛୁଡ଼ି ନ ପାରଇଁ ମୁଁ ମୋର ବେନି ଅକ୍ଷି ॥ ଏମନ୍ତେ ଅନେକ ସ୍ତୁତି କରେଣ ଉଦ୍ଧବ । ପ୍ରେମଭକ୍ତିଭାବେ ଦେହୁ ହେଲା ଗଦ ଗଦ ॥ ପୁଣି ସେ ପାଏ ପଡ଼ିଣ ଶୁଏ ଭୂମିଗତେ । ପୁଣି ଉଠି କର ଯୋଡ଼େ ପ୍ରଭୁଙ୍କ ଅଗ୍ରତେ ॥ ନୟନରୁ ଅଶ୍ରୁଜଳ ଯାଉଅଛି ବହି । ପ୍ରେମେ ଗଦ ଗଦ ହୋଇଅଛଇ ଅନାଇଁ ॥ ଦେଖିଣ ତାହାର ଭକ୍ତି ହସି ନାରାୟଣ । ସୁଗମ୍ଭୀର ବଚନରେ ବୋଲନ୍ତି ସେ ପୁଣ । ୪୦ ।

## ରତ୍ନପାଦୁକୋବାଚ ।

ଶୁଣ କହୁଅଛି ତୋତେ ଭକ୍ତଶିରୋମଣି । ପ୍ରେମରେ ତୁ ସ୍ତୁତି କରି ମୋତେ ନେଲୁ କିଣି ॥ ଏବେ ତୁହି ଭକତ ରେ ଶୁଣ ମୋ ବଚନ । ଯେବଣ ସ୍ତୁତି ତୁ କଲୁ ମୋର ସନ୍ନିଧାନ ॥ ସ୍ତୁତିମାନଙ୍କରେ ଏହୁ ଅଟଇ ଯେ ସାର । ଯେ ଲୋକ ପଢ଼ିବ ଧ୍ୟାନ କରିଣ ମୋହର ॥ ମୁହିଁ ତାହାକୁ ପ୍ରସନ୍ନ ହୋଇବି ଯେମନ୍ତେ । ଏହି ସ୍ତୁତିକୁ ଅଭ୍ୟାସି ପଢ଼ିବ ଯେ ନିତ୍ୟେ ॥ ତାହାର ଗୃହକୁ ଲକ୍ଷ୍ମୀ କେବେ ନ ଛାଡ଼ିବ । ଅପୁତ୍ରିକ ହୋଇ ଥିଲେ ସେ ପୁତ୍ର ପାଇବ ॥ ନିର୍ଦ୍ଧନ ଯେ ଧନବନ୍ତ ମୂର୍ଖ ବିଦ୍ୟା ପାଇ । ରାଜଦ୍ୱାରରେ ତାହାର କିଛି ଭୟ ନାହିଁ ॥ ଶ୍ରଦ୍ଧା ଚିତ୍ତେ ଏ ସ୍ତୁତିକୁ

ପଢ଼ିବ ଯେ ନର । ଏହି ଭବସଂସାରକୁ ଭୟ ନାହିଁ ତାର ॥ ଶୁଣ ରେ ଭକତ ତୋତେ କହୁଅଛି ମୁହିଁ । ବ୍ରହ୍ମ ତତ୍ତ୍ୱ ନିବେଦନ ଏବେ କର ଭୁଇଁ ॥ ଶୁଣ ପରୀକ୍ଷିତ ରାଜା ପଗ୍ରୁଛିଲ ଯାହା । ହରିର ସ୍ୱରୂପବେ ଅମ୍ଭେ କହିଦେଲୁଁ ତାହା ॥ ଏହା ଶୁଣି ପରୀକ୍ଷିତ ହୋଇଲେ ସନ୍ତୋଷ । ଶ୍ରୀ ଗୋବିନ୍ଦ ଅବଧୂତ କରିଲେ ପ୍ରକାଶ । ୫୦ ।

ଇତି ଶ୍ରୀ ରତ୍ନପାଦୁକା ଶୁକ ପରୀକ୍ଷିତ ସମ୍ବାଦେ ଉଦ୍ଧବ ସୂତ-
କଥନେ ଦ୍ୱିତୀୟୋଽଧ୍ୟାୟଃ ।



# ତୃତୀୟ ଅଧ୍ୟାୟ ।

## ଉଦ୍ଧବ ଉବାଚ ।

ଉଦ୍ଧବ ସବିନୟ ହୋଇ । କହଇ ଶିରେ କର ଦେଇ ॥
ଶୁଣ ହେ କମଳାର ବର । କଥାଏ କହୁଛି ଏଥର ॥
ତୁମ୍ଭର ଗତି ଦେଖି ମୁହିଁ । ଆନକୁ ଚିତ୍ତ ନ ବଳଇ ॥
ତୁ ପ୍ରଭୁ ଭକତଠାକୁର । ବୋଲୁ ଯେ ବ୍ରହ୍ମତତ୍ତ୍ୱ ପର ॥
ତା ଶୁଣିବାକୁ ଶ୍ରଦ୍ଧା ମୋର । କହ ହେ ପ୍ରଭୁ ଚକ୍ରଧର ॥
ସେ ବ୍ରହ୍ମ କେମନ୍ତେ ଅଛଇ । କେଉଁ ରୂପରେ ତାକୁ ଧ୍ୟାଇ ॥
କେବଣ ସ୍ଥାନରେ ସେ ଅଛି । କେବଣ ଆକାର ହୋଇଛି ॥
ଦ୍ୱାରକାପୁରେ ଥିଲେ ତହିଁ । କହୁଣ ଥିଲ ମନେ ନାହିଁ ॥
ତୋର ଉପରେ ବ୍ରହ୍ମ ନାହିଁ । ଏହା ତ ସର୍ବଦା ଜାଣଇ ॥
କହ ହେ କମଳାର ବର । ବୋଲି ପଡ଼ିଲା ଶ୍ରୀପୟର । ୧୦ ।
ଏମନ୍ତ ଶୁଣି ନାରାୟଣ । ଭକ୍ତକୁ ତୋଳିଲେ ତକ୍ଷଣ ॥

## ଶ୍ରୀ ଭଗବାନୁବାଚ ।

ଶୁକ କହନ୍ତି ରାଜା ଆଗେ । ରତ୍ନପାଦୁକା ପରସଙ୍ଗେ ॥
ରତ୍ନପାଦୁକା କହେ ବାଣୀ । ଶୁଣ ଭକତଚୂଡ଼ାମଣି ॥

ଶୁଣ ଉଦ୍ଧବ ଦେଇ ମନ । କହିବା ବ୍ରହ୍ମର ଲକ୍ଷଣ ॥
ବ୍ରହ୍ମାଣ୍ଡ ଚଉଦ ଭୁବନ । ତୋତେ କହିବା ଭକ୍ତ ଶୁଣ ॥
ପାତାଳ ସାତପୁର ହୋଇ । ତୁହି ତ ଦେଖିଅଛୁ ତହିଁ ॥
ଚନ୍ଦ୍ର ସୂର୍ଯ୍ୟର ଅତ ଯାତ । ନାହାନ୍ତି ଦିବସ ବା ରାତ ॥

## ଉଦ୍ଧବ ଉବାଚ ।

ଶୁଣି ଉଦ୍ଧବ ପଚାରଇ । ହେ ସ୍ୱାମି କହିବା ବୁଝାଇ ॥
ସୂର୍ଯ୍ୟ ତ ପୂର୍ବରୁ ଉଅଇଁ । ପୁଣି ସେ କାହିଁକ ଗମଇ ॥
ବ୍ରହ୍ମାଣ୍ଡ ଚଉଦଭୁବନ । ଏକା ସୂର୍ଯ୍ୟ ତ ଉଦ୍ୟମାନ ।୨୦।
କେମନ୍ତେ ଗମନ କରଇ । କହ ହେ ବ୍ରହ୍ମାଣ୍ଡଗୋସାଇଁ ॥
ଏମନ୍ତ ଶୁଣି ତା ବଚନ । କହନ୍ତି ଶ୍ରୀ ମଧୁସୂଦନ ॥

## ରତ୍ନପାଦୁକୋବାଚ ।

ଶୁଣ ଭକତ ଦେଇ ମନ । କହିବା ଏଥିର ଆଖ୍ୟାନ ॥
ସୂର୍ଯ୍ୟର ଗମନ ଯେମନ୍ତେ । କହିବା ଶୁଣ ଏକଚିତ୍ତେ ॥
ଧାତା ବ୍ରହ୍ମାଣ୍ଡ ଉଆଇଲା । ଚନ୍ଦ୍ର ସୂର୍ଯ୍ୟଙ୍କୁ ଜାତ କଲା ॥
ସୂର୍ଯ୍ୟ ଈଶାନଭାଗେ ରହି । ଚନ୍ଦ୍ରମା ପଶ୍ଚିମେ ଉଅଇଁ ॥
ମେରୁକୁ ମଧ୍ୟରେ ରଖିଲା । ଚଉଦପୁର ଉଆଇଲା ॥
ସ୍ୱର୍ଗରେ ଦେବତା ରଖଇ । ପାତାଳେ ନାଗଲୋକ ଥୋଇ ॥
ଏମନ୍ତେ ଚଉଦ ଭୁବନ । ଶୁଣିଲେ ଦ୍ୱାରକାଚାରେଣ ॥
ମେରୁକୁ ଅଷ୍ଟକୀଳା ହୋଇ । ଗ୍ରହ ପାଖରେ ସେ ବହଇ ।୩୦।
ମେରୁ ଉପରେ ଶୃଙ୍ଗ ଜାଣ । ଦଶଇ ତିନି ବତପନ୍ଥ ॥
ତିନି ଶୃଙ୍ଗରେ ଦୁଇ ପଥ । ଚନ୍ଦ୍ର ସୂର୍ଯ୍ୟଙ୍କ ଅତ ଯାତ ॥
ଏମନ୍ତ କରି ଉଆଇଲା । ମୋତେ ସେ ତପରେ ତୋଷିଲା ॥
ତାହାର ତପ ଦେଖି ମୁହିଁ । ବେଗେ ପ୍ରସନ୍ନ ହୋଇଲଇଁ ॥
ବର ମାଗିଲା ମୋତେ ଗୃହିଁ । ବୋଲଇ ଶୁଣ ଭବଗ୍ରାହି ॥
ସୂର୍ଯ୍ୟମଣ୍ଡଳେ ତୁମ୍ଭେ ବସ । ଚଉଦ ବ୍ରହ୍ମାଣ୍ଡକୁ ଦୃଶ୍ୟ ॥

ତା ଶୁଣି ସନମତ କରି । ସୂର୍ଯ୍ୟମଣ୍ଡଳେ ଦେହ ଧରି ॥
କମଳ ଆସନ କଲଇଁ । ବସିଲ ରଥପରେ ଯାଇ ॥
ବରିଷ୍ଠ ନାରାୟଣ ନାମ । ଜଗତେ ହେଲା ଅନୁପମ ॥
ଅମ୍ଭେ ବୋଇଲୁଁ ବ୍ରହ୍ମା ଶୁହିଁ । ଚନ୍ଦ୍ରମଣ୍ଡଳେ ବସ ତୁହି ।
ଏମନ୍ତେ ଅମ୍ଭେ ଦୁଇ ଜଣ । ବସିଲୁଁ ଚନ୍ଦ୍ର ସୂର୍ଯ୍ୟ ଜାଣ ॥
ଅମ୍ଭେ ବିଚାର କଲୁଁ ମନେ । କେତେ ବସିବା ଏ ଆସନେ ॥
ଏମନ୍ତ ବିଚାର ମନରେ । କଲେ ବସିଲୁଁ ଆସନରେ ॥
ଦ୍ୱାଦଶ ସୂର୍ଯ୍ୟ ଜାତ କଲୁଁ । ଚଉଦବ୍ରହ୍ମାଣ୍ଡେ ଗମିଲୁଁ ॥
ଦ୍ୱାଦଶ କୋଟି ଗୌରବରେ । ଗମିଲୁଁ ଷାଠିଏ ଦଣ୍ଡରେ ॥
ସୂର୍ଯ୍ୟରେ ଏକ ଅଂଶ ଥୋଇ । ଅମ୍ଭେ ବୈକୁଣ୍ଠେ ହେଲୁଁ ଯାଇ ॥
ଏହା ଦେଖିଣ ଧାତା ମନେ । କୋପ କରିଲେ ଅନୁକ୍ଷଣେ ॥
ତହିଁରେ ଏକ ଅଂଶ ରଖି । ବ୍ରହ୍ମା ଚଳିଲେ ତା ଉପେକ୍ଷି ॥
ଏମନ୍ତେ କେତେ କାଳ ଗଲା । ଚନ୍ଦ୍ର ସୂର୍ଯ୍ୟଙ୍କୁ ବାଦ କଲା ॥
ଲକ୍ଷେ ବରଷ ପର୍ଯ୍ୟନ୍ତେ । ବାଦ ହୋଇଲା ଏହମନ୍ତେ ।
ପୃଥ୍ୱୀରେ ଜନ୍ତୁ ନାଶ ଗଲେ । ଦେବେ ଗୁହାରି ଯାଇଁ କଲେ ॥
ଶୁଣି ଆଇଲୁଁ ବେନି ଜଣ । ତୋଷିଲୁଁ ଚନ୍ଦ୍ର ସୂର୍ଯ୍ୟ ପୁଣ ॥
ଦ୍ୱାଦଶ ସୂର୍ଯ୍ୟଙ୍କୁ ଅଣାଇଁ । ବୋଇଲୁଁ ଶୁଣ ସଙ୍କ୍ଷିପାଇଁ ॥
ଏ ତେଜ କର ସମ୍ବରଣ । ଶୁଣ ବରିଷ୍ଠ ନାରାୟଣ ॥
ଦ୍ୱାଦଶ ସୂର୍ଯ୍ୟ ତୁମ୍ଭେ ରହ । ଏକ ଶୃଙ୍ଗରେ ଉଦେ ହୁଅ ॥
ଏହା ଶୁଣିଣ ନାରାୟଣ । ସୂର୍ଯ୍ୟଙ୍କୁ ହୃଦେ ସମ୍ବରଣ ॥
ଦ୍ୱାଦଶ ସୂର୍ଯ୍ୟଠାରୁ ପୁଣ । କଳାଏ କଳାଏ ଘେନିଣ ॥
ଗମିଲେ ଊର୍ଦ୍ଧ୍ୱ ଲକ୍ଷ ପୁଣ । ଗମନ୍ତି ଚଉଦ ଭୁବନ ॥
ଯେ ଲକ୍ଷ ଯୋଜନକୁ ଯାଇ । ଶୃଙ୍ଗରେ ଗଳଣ ଆସଇ ॥
ପୁଣ ଖସଇ ଲକ୍ଷ ପୁଣି । ଗମଇ ପାତାଳଭୁବନ ।
ପାତାଳୁଁ ସୁତଳକୁ ଯାଏ । ସୁତଳୁଁ ରସାତଳେ ହୁଏ ॥
ଏମନ୍ତେ ଲକ୍ଷେ ପୁଣି ଯାଇ । ପୁଣି ଯେ ଊର୍ଦ୍ଧ୍ୱକୁ ଆସଇ ॥
ପୂର୍ବଦିଗରେ ଲକ୍ଷେ ପୁଣ । ଉର୍ଦ୍ଧ୍ୱେ ଗମଇ ସୂର୍ଯ୍ୟ ପୁଣ ॥

ମର୍ତ୍ତ୍ୟକୁ ଉଇଁଲେ ଦଶଇ । ପୁଣିହିଁ ଲକ୍ଷେ ଯୁଣ ଯାଇ ॥
ଏମନ୍ତେ ସୂର୍ଯ୍ୟଙ୍କ ଗମନ । କହିଲୁଁ ଭକ୍ତ ଏବେ ଶୁଣ ॥
ଉଦ୍ଧବ ଶୁଣି ତୋଷମନ । ବୋଲଇ ଶୁଣ ଭଗବାନ ॥

## ଉଦ୍ଧବ ଉବାଚ ।

ଉଦ୍ଧବ ଶିରେ ଦେଇ ପାଣି । କହେ ବିନୟ ହୋଇ ବାଣୀ ॥
ନମସ୍ତେ ପ୍ରଭୁ ଦାମୋଦର । ଶୁଣିଲି ସୂର୍ଯ୍ୟ ଗମନବାର ॥
ଅବର କଥା ଏ ଶ୍ରୀହରି । ପୁଚ୍ଛିବି କହ ଦୟା କରି ॥
ଚନ୍ଦ୍ର ସୂର୍ଯ୍ୟଙ୍କ ବାଦ ହେଲା । ସେହୁ ଯେ କେମନ୍ତେ ଗମିଲା ॥
ଏ କଥା କହ ନାଥ ମୋତେ । ସଂଶୟ ଲାଗିଲା ମୋ ଚିତ୍ତେ ॥
କହନ୍ତି ପ୍ରଭୁ ନାରାୟଣ । ଶୁଣ ଭକତ ଦେଇ ମନ ॥
ରତ୍ନପାଦୁକା କହେ ଧୀରେ । ନୀରଦ ଗମ୍ଭୀର ସ୍ୱରରେ ॥
ପରୀକ୍ଷେ ଶୁକମୁନି କହେ । ସୁଜନେ ଏଣେ କର ଲହେ ॥
କହେ ଗୋବିନ୍ଦ ଦାସ ହୀନ । ନୃସିଂହପାଦେ ଦେଇ ମନ ॥
ଗୁରୁ ମୋ କୃଷ୍ଣ ଅବଧୂତ । ତାହାଙ୍କ ପାଦେ ଦେଇ ଚିତ୍ତ ॥
ଶ୍ରୀ ରତ୍ନପାଦୁକାର ବାଣୀ । ଶ୍ରୀ ଶୁକ କହନ୍ତି ବଖାଣି ॥
ସୁଜନେ ନ ଧରିବ ଦୋଷ । ମୁଁ ତୁମ୍ଭ ଦାସ ପରଦାସ । ୭୮ ।

ଇତି ଶ୍ରୀ ରତ୍ନପାଦୁକା ଉଦ୍ଧବ ସମ୍ବାଦେ ଶୁକ ପରୀକ୍ଷିତ କଥନେ ନାମ ତୃତୀୟୋଽଧ୍ୟାୟଃ ।



# ଚତୁର୍ଥ ଅଧ୍ୟାୟ ।

## ଶ୍ରୀ ଶୁକ ଉବାଚ ।

କହନ୍ତି ଶୁକ ମୁନିବର । ଶୁଣ ହେ ଉତ୍ତରକୁମର ॥

## ରତ୍ନପାଦୁକୋବାଚ ।

ରତ୍ନପାଦୁକା କହେ ଧୀରେ । ଶୁଣ ଉଦ୍ଧବ ମନ ସ୍ଥିରେ ॥

ଚନ୍ଦ୍ର ମନରେ ବିଚାରିଲା । ସୂର୍ଯ୍ୟ ମୁଁ ହୋଇବି ବୋଇଲା
ମୋତନ୍ତୁ ସୁନ୍ଦର ଯେ ନାହିଁ । ମୋ ରୂପ ଦେଖି ଜନ ମୋହି
ମୋତେ ଯେ ଦେଖି ଜନମାନେ । ଶାନ୍ତ ହୁଅନ୍ତି ତୋଷମନେ ॥
ମୁଁ ଏବେ ତପରେ ବସିବି । ବ୍ରହ୍ମା ତୋଷିଣ ବର ଦେବ ॥
ଏମନ୍ତେ ମନେ ବିଚାରିଲା । ମଉନେ ଆସନେ ବସିଲା ॥
ତାହାର ତପ ଦେଖି ପୁଣ । ନାରଦ ଗଲେ ତତକ୍ଷଣ ॥
ମିଳିଲେ ବିଷ୍ଣୁ ଆଗେ ଯାଇ । ବୋଇଲେ ଶୁଣ ଭବଗ୍ରାହୀ ॥
ଆସନେ ବସିଣ ଚନ୍ଦ୍ରମା । ଅତ୍ୟନ୍ତ କଲକ ଗାରିମା ॥
ଅଦିତ୍ୟ ହୋଇବାର ପାଇଁ । ବସିଛି ଅଟେ ତପ ଧ୍ୟାଇ ॥
ଏମନ୍ତେ କହିଗଲେ ମୁନି । ତାଙ୍କ ବଚନ ଅମ୍ଭେ ଘେନି ॥
ମନରେ କୂଟ ବିଚାରିଲୁଁ । ତକ୍ଷଣେ ଶୂନ୍ୟେ ଗମ ଗଲୁଁ ॥
ଗରୁଡ଼ ବାହାନରେ ବସି । ଅମ୍ଭେ ହୋଇଲୁଁ ଶୂନ୍ୟବାସୀ ॥
ଚନ୍ଦ୍ରକୁ ଦେଖା ଦେଲୁଁ ଯାଇ । ବୋଇଲୁ ଚନ୍ଦ୍ରମୁଖ ଚାହିଁ ॥
ଶୁଣ ହେ ଶଶି ମନ ଦେଇ । ଯାହା କଳ୍ପଣା କଲୁ ତୁହି ॥
ମନରେ କରିଛୁ ବିଚାର । ସୂର୍ଯ୍ୟ ହେବାକୁ ତତପର ॥
ତପର କଷ୍ଟରୁ ତୋହର । ପ୍ରସନ୍ନ ହେଲୁଁ ଘେନ ବର ॥
ତୁ ଏବେ ଅମ୍ଭ ବୋଲ ଶୁଣ । କର ଗମନ ଶିବ ସ୍ଥାନ ॥
ପାର୍ବତୀସଙ୍ଗେ କରି ଭାବ । ପ୍ରୀତି ହୋଇଲେ ସୂର୍ଯ୍ୟ ହେବ ॥
ଏମନ୍ତ କହି ନାରାୟଣ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
କହନ୍ତି ଶୁକ ମୁନିବର । ରତନ ପାଦୁକା ବିସ୍ତାର ॥
ଚନ୍ଦ୍ର ଯେ ତପ କରୁଥିଲା । ଶ୍ରୀହରି ବଚନେ ଛାଡ଼ିଲା ॥
ମନରେ କରଇ ବିଚାର । ଯିବଇଁ ଶଙ୍କରଙ୍କ ଘର ॥
ବିଷ୍ଣୁର ମାୟା ନ ଜାଣିଲା । ମନରେ ପାପ ବିଚାରିଲା ॥
ଯେ ମାତା ଜଗତ କାରିଣୀ । ଯେ ମାତା ଭବ ସହାରିଣୀ ॥
ଅବର ପତିବ୍ରତା ଯେହି । ଈଶ୍ୱରୁ ଆନ ନ ଜାଣଇ ॥
ଯେ ନାରୀ ମହିଷାକୁ ମାରିଲା । କୋପରେ ଜଗତ ଦହିଲା ॥
ଚନ୍ଦ୍ର ତାହାରେ ମନ ଦେଲା । ତକ୍ଷଣେ ଶିବପୁର ଗଲା ॥

ଗମିଲ୍ଲ କପିଳାସ ସ୍ଥାନେ । ପଶିଲ୍ଲ ଈଶ୍ୱର ଭୁବନେ ॥
ନାହାନ୍ତି ପ୍ରଭୁ ତ୍ରିପୁରାର । ଅଛନ୍ତି ଦକ୍ଷର କୁମାରୀ ॥
ଏହା ନ ଜାଣି ଚନ୍ଦ୍ର ମନେ । ଉଲ୍ଲସେ ଚଳିଲା ବହନେ ॥
ଦାସୀଗଣଙ୍କୁ ସଙ୍ଗେ ଧରି । ମଧ୍ୟରେ ଉମା ଯେ ସୁନ୍ଦରୀ ॥
କିସ କହିବା ତାଙ୍କ ଜ୍ୟୋତି । ଦହନ ତମ୍ଭା ପ୍ରାୟେ କାନ୍ତି ॥
ଚମ୍ପକୁଁ ଯା ଅଙ୍ଗ ଉଦ୍ଦୀପ୍ତ । ସୌନ୍ଦର୍ଯ୍ୟେ ମୋହନ୍ତି ଜଗତ ॥
ଯା ବେଶେ ବଶ ଦିଗମ୍ବର । ଲୋଭେ ରହିଲେ ଯା ସଙ୍ଗର ॥
ଅବର ଉପମା ଯେ ନାହିଁ । ତାର ରୂପକୁ ସମ କାହିଁ ॥
ବେଣୀ ଯେ ଲମ୍ବିଛି ପୃଷ୍ଠରେ । ସୁବର୍ଣ୍ଣ ଝୁମ୍ପା ଯେ ତହିଁରେ ॥
ବିବିଧ କୁସୁମରେ ଗଭା । ଉଦିତ ରବିକର ପ୍ରଭା ॥
କପୋଳେ ଝଲକା ପାଚିଆ । ତହିଁରେ ସେମନ୍ତିକା ଛାୟା ॥
ଭ୍ରୂଲତା ମଧ୍ୟକୁ ସୁନ୍ଦର । କୋଟିଏ ଇନ୍ଦୁ ତେଜ ତାର ॥
ମୁଖକୁ କୋଟି ଚନ୍ଦ୍ର ସମ । ତୁଳନା ଅଟଇ ସାମାନ୍ୟ ॥
କର୍ଣ୍ଣରେ ଫୁଲ ମଲ୍ଲୀକଢ଼ି । ଝଲକା ତାଟଙ୍କରେ ଝଡ଼ି ॥
ଭ୍ରୂଲତା ସୁନ୍ଦର ଦିଶଇ । କଜ୍ଜ୍ୱଳ ଆଖି ଶୋଭାପାଇ ॥
ନାସାରେ ନାକଚଣା ରହି । ବସଣି ଫୁଲଗୁଣା ଶୋହି ॥
ନାସାକୁ ଉପମା ଯେ ନାହିଁ । ତିଳ କୁସୁମ ନ ଘଟଇ ॥
ଅଧର ବନ୍ଧୁଲି ନିନ୍ଦଇ । ଦନ୍ତ ଡାଳିମ୍ବ ସମ ହୋଇ ॥
କଣ୍ଠରେ ଦିବ୍ୟ ଅଳଙ୍କାର । ଗଳାରୁ ପଡ଼ଇ ହୃଦର ॥
ଭୁଜରେ ତାଡ଼ ଚୁଡ଼ୀ ଶୋଭେ । ଅଙ୍ଗୁଷ୍ଠି ଚମ୍ପାକଢ଼ି ପ୍ରାୟେ ॥
ପୟୋଧର ଯେ ପୂର୍ଣ୍ଣ କୁମ୍ଭ । ଦେଖି ଈଶ୍ୱର ଭଜେ ଦମ୍ଭ ॥
ପିନ୍ଧିଛି ରକ୍ତବର୍ଣ୍ଣ ଶାଢ଼ି । ଓଢ଼ଣି କୃଷ୍ଣ ବର୍ଣ୍ଣ ଜଡ଼ି ॥
କଟିରେ ହେମର ପାଟିଆ । ଯାନୁରେ କ୍ଷୁଦ୍ର ଘଣ୍ଟି ନୂଆ ॥
ବେନି ପଦ୍ମରେ ଯେ ପାଷୁଡ଼ି । ହେମ ସାଗରେ ଛନ୍ତି ଜଡ଼ି ॥
ଅଳତା ସାଜେଣି ହୋଇଛି । ନଖ କି ମାଣିକ୍ୟ ନିନ୍ଦୁଛି ॥
କଟି ଡମ୍ବରୁର ଆକାର । ଦେଖି ଶଙ୍କର ଦମ୍ଭ ହର ॥
ସଖିଙ୍କ ମଧ୍ୟେ ଛନ୍ତି ବସି । ନକ୍ଷତ୍ରେ ପୂର୍ଣ୍ଣମୀର ଶଶୀ ॥

ଏମନ୍ତେ ଜାଣି ଇନ୍ଦ୍ର ମନେ । ମିଳିଲା ତାଙ୍କ ସନ୍ନିଧାନେ ॥
ସୁନ୍ଦର ରୂପ ତାଙ୍କ ଦେଖି । କାମେ ହୋଇଲା ଛନ୍ନମାଖି ॥
ଦେଖି ପାର୍ବତୀ କୋପକଲେ । କପାଇଁ ଅଇଲୁ ବୋଇଲେ ॥
ମୋ କାନ୍ତ ନାହାନ୍ତି ନା ଘରେ । କିମ୍ପା ଅଇଲୁ ଏକାନ୍ତରେ ॥
ଶୁଣି ଚନ୍ଦ୍ରମା କହେ ବାଣୀ । ଶୁଣ ଗୋ ଶିବର ଘରଣୀ ॥
ମୁହିଁ ଅଇଲି ତୋର ପାଶ । ତୋତେ ଦେଖିଣ ହେଲି ବଶ ॥
ମୋ ରୂପ ତ୍ରିଭୁବନେ ନାହିଁ । ମୁହିଁ ସୁନ୍ଦର ସବୁଠାଇଁ ॥
ମୋତେ ଦେଖିଣ ଜନମାନେ । ମୁଗ୍ଧ ହୁଅନ୍ତି ତ୍ରିଭୁବନେ ॥
ମୁହିଁ ସୁନ୍ଦର ଚନ୍ଦ୍ରପୁରେ । କହିଲି ତୋହର ଆଗରେ ॥
ତୋହର ରୂପ ଦେଖି ଏବେ । ବଶ ହୋଇଲି କାମ ଲୋଭେ ॥
ଏମନ୍ତ ବୋଲି ଚନ୍ଦ୍ର ଧୀରେ । ଗମିଲା ସତୀର ସମୁରେ ॥
ଦେଖିଣ ଉମା କୋପକଲେ । ଚନ୍ଦ୍ରମା ବଚନେ କମ୍ପିଲେ ॥
ବୋଇଲେ ଶୁଣ ରେ ପାପିଷ୍ଠ । ସତୀତ୍ୱ କରିବୁ କି ଭ୍ରଷ୍ଟ ॥
ମୁହିଁ ଯେ ଈଶ୍ୱର ଘରଣୀ । ଅଟଇ ପତିଭକ୍ତା ପଣି ॥
ଏ ବାକ୍ୟ କହିଲୁ ତୁ ଯେବେ । ଶାପ ମୁ ଦେବ ସେହ ଏବେ ॥
ମୋର ବଚନ ଯେବେ ସତ । ସେହ ରେ ଚଣ୍ଡାଳ ତୁରତ ॥
ଏମନ୍ତ ବୋଲି ମହା ସତୀ । ଚନ୍ଦ୍ରକୁ ଶାପ ଦେ ଉଅନ୍ତି ॥
ପୁଣି କହନ୍ତି ଏ ବିଚାର । ପୁଂଲିଙ୍ଗ ସଂସାରରେ ସାର ।
ପକ୍ଷକେ ଛାଡ଼ ମର ତୁହ । ପନ୍ଦର ଦିନେ ଭସ୍ମ ହୋଇ ॥
ସଂସାରେ ନ ଦେଖିବେ କେହି । ପୁଣ ଜନ୍ମିବୁ ଦେହ ବହି ॥
ଏମନ୍ତ ବୋଲି ଶାପ ଦେଲେ । ତକ୍ଷଣେ ଭିତରେ ପଶିଲେ ॥
ରହିଲେ ନିଜ ପୁରେ ଯାଇ । ଶୁଣ ଉଦ୍ଧବ ମନ ଦେଇ ॥
ଏମନ୍ତେ ଶୁଣି ଭକ୍ତ ମନେ । ବିସ୍ମୟ କଲା ତତକ୍ଷଣେ ॥

ଉଦ୍ଧବ ଉବାଚ ।

ବୋଲଇ ଶୁଣ ଭୁବସ୍ୱାମୀ । ମୋ ମନ ନ ପଶିଲା ତହିଁ ॥
ଗଉରୀ ଶାପ ଦେଲେ ଯହିଁ । ଚନ୍ଦ୍ରମା କିସ କଲା ତହିଁ ॥
ଏହା କହିବ: ପ୍ରଭୁ ମୋତେ । ନମଇ ତୋର ପାଦଗତେ ॥

ଏମନ୍ତ ବୋଲିଣ ଈଶ୍ୱର । ଆନନ୍ଦେ ହେଲେ ପ୍ରେମଭର ॥
ଦେଖି ତାହାର ଭକ୍ତି ଗୁଣ । କହନ୍ତି ପ୍ରଭୁ ନାରାୟଣ ॥

## ରତ୍ନପାଦୁକା ଉବାଚ ।

ରତ୍ନ ପାଦୁକା କହେ ବାଣୀ । ଶୁଣ ଭକତଚୂଡ଼ାମଣି ॥
ଭବାନୀ ଶାପ ଯହୁଁ ଦେଲେ । ଭସ୍ମେଣ ଚନ୍ଦ୍ର ପଳାଇଲା ॥
ଅତଳ ଭିତରେ ସେ ପଳାଇ । କାହାର ବଦନ ନ ଚାହିଁ ॥
ପୁଣି ସେ କେତେଦୂର ଗଲା । ଏମନ୍ତେ ମନେ ବିଚାରିଲା ॥
ବୋଲଇ ଶାପରୁ ମୁକତ । କେମନ୍ତେ ହୋଇବି ମୁହିଁତ ॥
ଚନ୍ଦ୍ରଲା ଅନେ ନାହିଁ ଅଶ । ଯିବଇଁ ଦିଗମ୍ବର ପାଶ ॥
ଏମନ୍ତ ବୋଲି ଚନ୍ଦ୍ର ଯାଇ । ହରଙ୍କୁ ଦେଖିବାକୁ ପାଇଁ ॥
ଏମନ୍ତେ ବନସ୍ତେ ବୁଲିଲା । ହରଙ୍କୁ ସନ୍ନିଧେ ଦେଖିଲା ॥
ହର ବୁଲନ୍ତି ବନେ ବନେ । ଚନ୍ଦ୍ର ମିଳିଲା ସନ୍ନିଧାନେ ॥
ଯାଇଣ କଲା ନମସ୍କାର । ଶିରେ ଯୋଡ଼ିଲା ବେନିକର ॥
ମନରେ ହୋଇଲା ସାନନ୍ଦ । କୁମୁଦ ବନ୍ଧୁ ପାଞ୍ଚ ଛନ୍ଦ ॥

## ଚନ୍ଦ୍ରମା ଉବାଚ ।

ନମସ୍ତେ ହବଗ ଈଶ୍ୱର । ନମସ୍ତେ ଜଗତ ଈଶ୍ୱର ॥
ନମସ୍ତେ ପ୍ରଭୁ ଦିଗମ୍ବର । ନମୋ ଗଉରୀ ଦେବୀ ବର ॥
ନମସ୍ତେ ପ୍ରଭୁ ତ୍ରିପୁରାରି । ନମୋ ପିନାକ ଧନୁର୍ଦ୍ଧାରି ॥
ନମସ୍ତେ ରିପୁ ଧ୍ୱଂସନ । ନମସ୍ତେ ଅଧର ନନ୍ଦନ ॥
ନମସ୍ତେ ଯୋଗୀ ଯୋଗେଶ୍ୱର । ତ୍ରି କାଳ ମାୟାରୁ ବାହାର ॥
ନମୋ ଭକତ ଚିନ୍ତାମଣି । ଭକ୍ତ ଅରତ ଫେଡ଼ ଶୁଣି ॥
ନମସ୍ତେ ନମସ୍ତେ ବୋଲିଣ । ସ୍ୱେଦନ କରେ ତତକ୍ଷଣ ॥
ବହୁତ ସ୍ତୁତି ସେହୁ କଲା । ଚରଣେ ବନ୍ଦନ୍ତେ ଶୋଇଲା ॥
ଦେଖିଣ ହର ତୋଷମନ । ଚନ୍ଦ୍ରକୁ କୋଳରେ ଧରିଣ ॥
ପ୍ରସନ୍ନ ହୋଇଣ କହନ୍ତି । ବର ତୁ ମାଗ ହୋ ବୋଲନ୍ତି ॥
ଶୁଣି ଚନ୍ଦ୍ରମା ତୋଷମନ । କର ଯୋଡ଼ିଲା ତତକ୍ଷଣ ॥
ମସ୍ତକେ ରହିବ ବୋଇଲା । ପୁଣି ସେ ପଦ୍ମରେ ପଡ଼ିଲା ॥

ହର ଶୁଣିଣ ତୋଷମନ । ବୋଲନ୍ତି ଅସ୍ତୁ ଏ ବଚନ ॥
ମୋହର ଶିରେ ତୁହି ଥାଅ । ମୋ ଅର୍ଦ୍ଧ ଅଙ୍ଗ ତୁ ବୋଲାଅ ॥
ଶୁଣିଣ ଚନ୍ଦ୍ର କହେ ବାଣୀ । ଶିରେ ଯୋଡ଼ିଣ ବେଣ୍ଣପାଣି ॥
ହେ ପ୍ରଭୁ ଏହା ଆଜ୍ଞା ହେଉ । କେବେ ଅନ୍ୟଥା ଏହା ନୋହୁ ॥
ପାର୍ବତୀ ସଙ୍ଗମର କାଳେ । ମୁଁ ଥିବ ତୋର ମସ୍ତକରେ ॥
ଶଶିଧର ଯେ ନାମ ତୋର । ହୋଇବ ଜଗତେ ବିସ୍ତାର ॥
ଚନ୍ଦ୍ରଶେଖର ନାମ ହେବ । ଜଗତେ ଏ ନାମ ରହିବ ॥
ଶୁଣି ଈଶ୍ୱର ତୋଷ ହୋଇ । ଅସ୍ତୁ ବଚନ ତାକୁ ଦେଇ ॥
ବୋଲନ୍ତି ହର ଚନ୍ଦ୍ରେ ଗୃହିଁ । ଅପ ପୁରକୁ ଯିବା ବାହି ॥
ଶୁଣି ତାହାଙ୍କ ଦିବ୍ୟବାଣୀ । ଚନ୍ଦ୍ର ଯୋଡ଼ିଲା ବେଣ୍ଣପାଣି ॥
ବୋଲଇ ଶୁଣ ପଶୁପତି । କୋପ କରିଛି ମୋତେ ସତୀ ॥
ତୁମ୍ଭର ଦର୍ଶନ ନିମନ୍ତେ । ମୁହିଁ ଆଇଲି ଶୂନ୍ୟପଥେ ॥
ମିଳିଲି ନବରେଣ ଯାଇ । ଦେଖିଲି ଉମାଅଛି ରହି ॥
ତା ରୁପ ଦେଖି ମୁଁ ରହିଲି । ମନେ କପଟ ବିଗୃରିଲି ॥
ଭାବେ ସୁନ୍ଦର ତନୁ ମୁହିଁ । ମୋ ରୁପସମ ନାହିଁ କେହି ॥
ଏ ନାରୀ ଅତ୍ୟନ୍ତ ସୁନ୍ଦରୀ । ଏହାକୁ ଯେବେ ଭୋଗକରି ॥
ଏହା ଜାଣିଣ ଉମା ମନେ । ଶାପ ସେ ଦେଲା ତତକ୍ଷଣେ ॥
ବୋଇଲା ପକ୍ଷକ ଭିତରେ । ଭସ୍ମ ତୁ ହୋଇବୁ ସତ୍ୟରେ ॥
ମୁହିଁ ବିଗୃରକଲି ମନେ । ଏ ଶାପୁ ତରିବି କେସନେ ॥
ଏମନ୍ତ ମନେ ବିଗୃରିଲି । ଆସି ତୋ ସନ୍ନିଧେ ମିଳିଲି ॥
ତୁ ଏବେ ବରଦେଲୁ ମୋତେ । ଅକ୍ଷୟ ହୋଇବା ନିମନ୍ତେ ॥
ଏ କଥା ହୋଇବ କେମନ୍ତ । କହ ହେ ପ୍ରଭୁ ବିଶ୍ୱନାଥ ॥
ହର କହନ୍ତି ଦିବ୍ୟବାଣୀ । ଶୁଣ ଚନ୍ଦ୍ରମା ପରମାଣି ॥
ଯାହା ଯେ ଶାପ ଦେଲା କାନ୍ତା । କେ ତାହା କରିବ ଅନ୍ୟଥା ॥
ହର କପଟ ନ ଜାଣିଲୁ । ପାର୍ବତୀ ହର ତୁ ଅଇଲୁ ॥
ଯାହା ସେ ଶାପଅଛି ଦେଇ । ତାହାକୁ ଖଣ୍ଡି କେ ପାରଇ ॥
ଶୁଣ ଚନ୍ଦ୍ରମା ମୋ ବଚନ । ଅମ୍ଭର ବର ଏ ପ୍ରମାଣ ॥

ପକ୍ଷକେ ବର୍ଦ୍ଧିତ ହୋଇବୁ । ଅପର ପକ୍ଷେ ତୁ କ୍ଷୟିବୁ ॥
ଉମାର ବଚନ ପ୍ରମାଣ । କ୍ଷୟ କର ତୁ ହେବୁ ଲୀନ ॥
ଅମୃ ଅକ୍ଷୟବର ଘେନ । କଳାଏ ବଢ଼ୁଥିବୁ ପୁଣି ॥
ଏ କଷ୍ଟ ତୋତେ ନ ଲାଗିବ । କ୍ଷୟ ବୃଦ୍ଧିରେ ପାଶୋରିବ ॥
ଗଉରୀ ଶେଖରର ତୁହି । ମୋହର ଅଙ୍ଗରେଣ ଥାଇ ॥
ଚନ୍ଦ୍ର କହଇ ଯୋଡ଼ି କର । ଶୁଣ ପିନାକୀ ଧନୁର୍ଦ୍ଧର ॥
ମୁଁ ଯେବେ ଶିରରେ ତୋହର । ରହିବି ବିନାଶ କାଳର ॥
ଗଉରୀ ଦୋଷୀ ହୋଇବ । ଏ କଥା ଅପକୀର୍ତ୍ତି ହେବ ॥
ପୁଣି କହନ୍ତି ଦିଗମ୍ବର । ଶୁଣ କୁମୁଦ ବନ୍ଧୁବର ॥
ଯାହା କହିଲୁ ତୁହି ସତ । ମୋ ଗର୍ଭ କେ କରିବ ଅନ୍ତ ॥
ବିରାଟ ରୂପେ ମୋର ଦେଖି । କଳନା କରିତ ନୁହଇ ॥
ପାଦ ମୋ ପାତାଳରେ ଥାଇ । ମସ୍ତକ ସ୍ୱର୍ଗପୁରେ ରହି ॥
ଚଉଦ ପୁର ମୋର ଶିରେ । ରହନ୍ତି ଦେବନାଗ ପୁରେ ॥
ମାନବ ଦାନବାଦିଗଣ । ପତଙ୍ଗ କୀଟ ଜୀବମାନ ॥
ମୋ ଦେହେଁ ଛନ୍ତି ଏତେମାନ । ତୁ ସୂର୍ଯ୍ୟ ଆଦି ଦେବଗଣ ॥
ଏମାନେ ଶରୀରେ ଅଛନ୍ତି । ଉମା ଅଟନ୍ତି ମହାସତୀ ॥
ସେ ଦେହୀ ଅଟନ୍ତି ଅନାଦି । ଜଗତ ସଂସାର ସମାଧି ॥
ଏରୂପ କାତ୍ୟାନୀ ଶରୀର । କେ ତାହା କରିବ ଗୋଚର ॥
ସମୁଦ୍ରେ ଯେସନ୍ତେ ଦୋଷ ନାହିଁ । ଏରୂପେ ତାକୁ ନ ଲାଗଇ ॥
ଶୁଣଣ ଶଶୀ ତୋଷ ହୋଇ । ପୁଣିହିଁ ବଚନ କହଇ ॥
ହେ ପ୍ରଭୁ କଥା ଏକ ଶୁଣ । ସୂର୍ଯ୍ୟରେ ବାଦକଲି ପୁଣ ॥
ସୂର୍ଯ୍ୟ ହୋଇବି ବୋଲି କରି । ତପ ଆରମ୍ଭ ମୁହିଁ କଲି ॥
ହରି ଯେ ମାୟା ମୋତେ କଲା । କପଟେ ମୋ ମନ ମୋହିଲା ॥
ହରିର ବାକ୍ୟ ସତ୍ୟକରି । ଉମାକୁ ଅଭିଲି ମୁଁ ହର ॥
ଗଉରୀ ମୋତେ ଶାପ ଦେଲା । ଏ କଥା କେମନ୍ତ ହୋଇଲା ॥
ଶୁଣି କହନ୍ତି ହର ହସି । ଶୁଣ ବଚନ ମୋର ଶଶୀ ॥
ମୋ ବାକ୍ୟେ ବର୍ଦ୍ଧି ତୁ ପକ୍ଷରେ । ପୂର୍ବେ ଗମିବୁ ତୁହି ଧୀରେ ॥

ପୂର୍ଣ୍ଣମୀ ହେବ ଯେଉଁଦନ । ସୂର୍ଯ୍ୟର ପ୍ରାୟେ ତୋର ବର୍ଣ୍ଣ ॥
ସେଠାରୁ ଉମାଶାପ ହେବ । ଲିତାଏ ଲିତାଏ ଛଡବ ॥
ଏମନ୍ତେ କ୍ଷୟ ତୁ ହୋଇବୁ । ଅସିଣ ମସ୍ତକେ ରହିବୁ ॥
ଏମନ୍ତ ଶୁଣି ତା ବଚନ । ଚନ୍ଦ୍ର ଗମିଲା ମେରୁ ସ୍ଥାନ ॥
ରହିଲା ଯାଇଁ ମଣ୍ଡଳରେ । ମେରୁକୁ ପ୍ରଦକ୍ଷିଣ କରେ ॥
ସେବଇ ପୂଜଇ ପଦ୍ମରେ । ଅଜ୍ଞା ମାଗଇ ନିରନ୍ତରେ ॥
ଏ ବର ଦେବାକୁ ପୂଜ୍ଜାମା । ନମଇ ଭକ୍ତି ଭାବ ଘେନି ॥
ନମଇ ନୃସିଂହ ପଦ୍ମରେ । ମୋ ଚନ୍ଦ୍ର ରକ୍ଷ ନିରନ୍ତରେ ॥

ଇତି ଶ୍ରୀ ରତ୍ନପାଦୁକା ଉଦ୍ଧବ ସମ୍ବାଦେ ଶୁକପରୀକ୍ଷ
କଥନେ ନାମ ଚତୁର୍ଥୋ୨ଧ୍ୟାୟଃ ।

---

## ପଞ୍ଚମ ଅଧ୍ୟାୟ ।

ଶ୍ରୀ ଶୁକ ଉବାଚ ।

ଲକ୍ଷ୍ମୀ ନୃସିଂହ ରୂପ ଯେହ୍ନ । ତାହାଙ୍କ ପାଦେ ଚନ୍ଦ୍ର ରକ୍ଷ ॥
କହନ୍ତି ବ୍ୟାସଙ୍କ କୁମର । ଶୁଣ ପରୀକ୍ଷ ନୃପବର ॥
ଉଦ୍ଧବ ନାରାୟଣେ ଗୃହି । କହନ୍ତି ଶିରେ କରଦେଇ ॥
ବୋଲେ ଉଦ୍ଧବ କର ଯୋଡ଼ି । ରତ୍ନପାଦୁକା ପାଦେ ପଡ଼ି ॥
ହେ ପ୍ରଭୁ ଜଗତ ଈଶ୍ୱର । କହ ହେ ଚନ୍ଦ୍ରର ବସ୍ତର ॥
ଚନ୍ଦ୍ର ଯେ ଶୂନ୍ୟ ପଥେ ଗଲା । ମେରୁ ଅଗ୍ରତେ ସେ ରହିଲା ॥
ସୂର୍ଯ୍ୟର ହେତୁରୁ ସେଠାଇଁ । କେମନ୍ତେ ଅତଯାତ ହୋଇ ॥
କହ ହେ ପ୍ରଭୁ ଦାମୋଦର । ନମଇଁ ତୋହର ପଦ୍ମର ॥

ରତ୍ନପାଦୁକା ଉବାଚ ।

ରତ୍ନପାଦୁକା କହେ ଧୀରେ । ଶୁଣ ଉଦ୍ଧବ ମନ ସ୍ଥିରେ ॥
ଚନ୍ଦ୍ର ଯେ ସୂର୍ଯ୍ୟ ବେନି ହୋଇ । ମେରୁ ଅଗ୍ରତେ ସେ ରହଇ ॥
ମେରୁର ତନି ଶୃଙ୍ଗ ଜାଣ । ଦୁଇଟି ବାଟ ତହିଁ ପୁଣ ॥
ଚନ୍ଦ୍ର ସୂର୍ଯ୍ୟଙ୍କ ରଥେ ଯେହ୍ନ । ଏକା ଯେ ଚକ୍ର ଅଟେ ସେହ୍ନ ॥

ଲକ୍ଷେ ଯୋଜନ ସେ ବିସ୍ତାର । ଶୁଣ ହେ ଭକତଶେଖର ॥
ମେରୁ ମଧ୍ୟରେ ଚକ ରହି । ପୂର୍ବରେ ବାର ଅର ହୋଇ ॥
ଆଦିତ୍ୟ ରଥ ସେ ହୋଇଲା । ପୂର୍ବରେ ଯେଣୁ ସେ ରହିଲା ॥
ପଶ୍ଚିମେ ଷୋଳ ଅର ହୋଇ । ଦୁଇ ଲକ୍ଷରେ ଚନ୍ଦ୍ର ଯାଇ ॥
ତାର ଶିଖରେ ତା ଆସନ । ଅଶ୍ୱ ଖଞ୍ଜିଛି ତହିଁରେଣ ॥
ସୁବର୍ଣ୍ଣ ମଣ୍ଡପ ହୋଇଛି । ହରିଣି ଯେ ସାରଥି ବସିଛି ॥
ମର୍କତ ଆସନ ଉପରେ । ଚନ୍ଦ୍ର ରହିଛି ଶୋଭାକାରେ ॥
ହାର କଙ୍କଣ ବଦ ମୁଦ୍ର । ଦଶଇ ନାନାରତ୍ନ ଭେଦ ॥
ଦିବ୍ୟ ଯେ ବେଶ ଅଲଙ୍କାର । ଶରୀରେ ଭୂଷଣ ତାହାର ॥
ରୋହଣୀ କନ୍ୟା ଅଛି ତହିଁ । ଚନ୍ଦ୍ରଙ୍କୁ ସୁନ୍ଦର ଅଟଇ ॥
ଅଠ ଯେ ଲକ୍ଷ ଯୋଜନରେ । ଚନ୍ଦ୍ରମା ବୁଲଇ ଶୂନ୍ୟରେ ॥
ତୁ ଅବା ବୋଲିବୁ ଏମନ୍ତ । ଚନ୍ଦ୍ରମା ଗମନ କେମନ୍ତ ॥
ଚନ୍ଦ୍ରମା ପାତାଳେ ଗମଇ । ଦୁଇ ଯେ ଲକ୍ଷ ତାକୁ କହି ॥
ପୁଣି ଆସଇ ଦୁଇ ଲକ୍ଷ । ପାତାଳେ ଗୃହ ଯେ ପ୍ରତ୍ୟକ୍ଷ ॥
ଊର୍ଦ୍ଧ୍ୱକୁ ଦୁଇଲକ୍ଷ ଯାଇ । ପୁଣି ସେ ତଳକୁ ଖସଇ ॥
ଏମନ୍ତ ଅଠଲକ୍ଷ ହୋଇ । ଶୁଣ ଭକତ ମନ ଦେଇ ॥
ନକ୍ଷତ୍ରଯୋଗ ଏହିମତେ । ଗମନ କରନ୍ତି ସଙ୍ଗତେ ॥
ଶୁଣି ଉଦ୍ଧବ ପଚାରିଲା । ଭୋ ପ୍ରଭୁ ସଂଶୟ ଲାଗିଲା ॥

## ଉଦ୍ଧବ ଉବାଚ ।

ଉଦ୍ଧବ ଶିରେ କର ଯୋଡ଼ି । ରତ୍ନ ପାଦୁକା ତଳେ ପଡ଼ି ॥
କହେ କୋମଳ କରି ବାଣୀ । ଶୁଣିମା ଦେବ ଚକ୍ରପାଣି ॥
ଶୁଣିଲି ଚନ୍ଦ୍ରର ବିଚାର । କହ ହେ ସୂର୍ଯ୍ୟ ସମାଚାର ॥
ସୂର୍ଯ୍ୟର କେମନ୍ତ ଆସନ । କେମନ୍ତେ ରହେ ସୂର୍ଯ୍ୟ ପୁଣ ॥
କେମନ୍ତ ଆସନେ ବସିଛି । କିରୂପେ ସୂର୍ଯ୍ୟ ଗମୁଅଛି ॥
ଏମନ୍ତ ବୋଲଣ ଉଦ୍ଧବ । ଶିରେ ଲଗାଇ ପଦ୍ମପାଦ ॥
କହନ୍ତି ପ୍ରଭୁ ନାରାୟଣ । ଶୁଣ ଉଦ୍ଧବ ଦେଇ ମନ ॥
ଲକ୍ଷେଯେ ତୋର ଯେ ହୋଇଲା । ସୂର୍ଯ୍ୟର କରରେ ଲାଗିଲା ॥

ସୂର୍ଯ୍ୟଙ୍କ ତୋରଣ ବୋଲଇ । ଗୃହ ଲକ୍ଷରେ ତୋର ଯାଇ ॥
ତୋରର ଶେଷ ସ୍ଥାନ ଜାଣ । ଅସନ ହୋଇଛି ଭିଆଣ ॥
ସାତ ଯେ ଅଶ୍ୱ ତହିଁ ଛନ୍ତି । ଅରୁଣ ସାରଥି ବସିଛି ॥
ରଥ ବାହଇ ଘନ ଘନ । ଚଳଇ ପୁଷ୍ପକ ବିମାନ ॥
ରଥ ଉପରେ ପଦ୍ମାସନେ । ସୂର୍ଯ୍ୟ ରହିଛି ଉଦ୍ୟମାନେ ॥
ଶଙ୍ଖ ଯେ ଚକ୍ର ଚତୁର୍ଷରେ । କମଳ ମାଳା ଯେ ହୃଦରେ ॥
ଲଲାଟେ ମୁକୁଟ ବସଇ । କର୍ଣ୍ଣେ କୁଣ୍ଡଳ ଅଛି ସାଜ ॥
ହୃଦରେ ମଣି ବିରାଜଇ । କଟିରେ ପୀତପଟ ଶୋହ ॥
ପଦ୍ମରେ ବେଢ଼ିଣ ନୂପୁର । ଶୋଭା ଦିଶୁଛି ଚନ୍ଦ୍ରପୁର ॥
ଛାୟା ଯେ ମାୟା ବେନିପାଶେ । ରହି ଅଛନ୍ତି ଦିବ୍ୟ ବେଶେ ॥
ଏମନ୍ତ ସୂର୍ଯ୍ୟର ମଣ୍ଡଳ । ଶୁଣ ହେ ଭକତ ଶେଖର ॥
ଏମନ୍ତ ଚନ୍ଦ୍ର ସୂର୍ଯ୍ୟ କହି । ଶୁଣ ତୁ ସାବଧାନ ହୋଇ ॥
ଚଉଦ ବ୍ରହ୍ମାଣ୍ଡ ବୋଲାଇ । ବୁଲନ୍ତି ଚନ୍ଦ୍ର ସୂର୍ଯ୍ୟ ତହିଁ ॥
ଗୃହ ଯେ ଲକ୍ଷ ଭାଗ ହୋଇ । ସୂର୍ଯ୍ୟ ଗମଇ ତହିଁ ଆଇ ॥
ଶୁଣି ଉଦ୍ଧବ ପଗ୍ଭରଇ । ହେ ପ୍ରଭୁ ସଂଶୟ ଲାଗିଲା ॥

## ଉଦ୍ଧବ ଉବାଚ ।

ମେରୁ ଶୃଙ୍ଗରେ ଦୁଇ ବାଟ । ଚନ୍ଦ୍ର ସୂର୍ଯ୍ୟଙ୍କ ନାହିଁ ଭେଟ ॥
ଚନ୍ଦ୍ର ଉତ୍ତର ଦ୍ୱାର ଯାଇ । ସୂର୍ଯ୍ୟତ ଦକ୍ଷିଣେ ଗମଇ ॥
ଏକଥା କହ ନାଥ ମୋତେ । ନମଇ ତୋ ଚରଣ ଗତେ ॥

## ରତ୍ନପାଦୁକା ଉବାଚ ।

ରତ୍ନ ପାଦୁକା କହେ ଧୀରେ । ଶୁଣ ତୁ ଦତ୍ତ ସୁତ ସ୍ଥିରେ ॥
ଚନ୍ଦ୍ର ଯେ ସୂର୍ଯ୍ୟ ବାଦକଲେ । ଦକ୍ଷିଣ ଉତ୍ତରେ ଗମିଲେ ॥
ସୂର୍ଯ୍ୟର ଦକ୍ଷିଣ ଅଟଇ । ଚନ୍ଦ୍ରମା ଉତ୍ତରରେ ଥାଇ ॥
ଛଅ ଯେ ଋତୁ ବାଣ୍ଟିନେଲେ । ବାରମାସକୁ ଯେ ଗମିଲେ ॥
ଏମାନ କହିବା ବୁଝାଇ । ଶୁଣ ଭକତ ମନ ଦେଇ ॥
ସୂର୍ଯ୍ୟ ଯେ କରଇ ଗମନ । ଅଶ୍ୱିନ ମାସଠାରୁ ପୁଣ ॥

ଦକ୍ଷିଣ ଦଗକୁ ଗମଇ । ଫଗୁଣ ମାସ ଯାଏ ହୋଇ ॥
ଏହି ମାସରେ ଚନ୍ଦ୍ର ଯାଇ । ଉତ୍ତର ଦଗରେ ଗମଇ ॥
ପୁଣ ଚଇତ୍ର ଠାରୁ ଜାଣ । ଉତ୍ତରେ କରଇ ଗମନ ॥
ସୂର୍ଯ୍ୟ ଉତ୍ତରାୟଣ ହୋଇ । ଚନ୍ଦ୍ର ଯେ ଦକ୍ଷିଣେ ଅସଇ ॥
ସେ ମେରୁ ଦକ୍ଷିଣ ଶୃଙ୍ଗରେ । ଚନ୍ଦ୍ର ଗମଇ ତହିଁଠାରେ ॥
ଉତ୍ତରେ ସୂର୍ଯ୍ୟ ଯେ ଗମଇ । ଏମନ୍ତେ ଭେଟ ତାଙ୍କ ନାହିଁ ॥
ଶୁଣ ଭକତ ଶିରୋମଣି । କହିଲୁ ଅତଯାତ ବାଣୀ ॥

ହୃକ୍ଷବ ଉବାଚ ।

କହେ ଉଦ୍ଧବ ଯୋଡ଼ି କର । ଶ୍ରୀରତ୍ନ ପାଦୁକା ପସ୍ତର ॥
ବୋଲଇ ଶୁଣ ନାରାୟଣ । କହିଲ ଦୁହଙ୍କ ବଚନ ॥
ଅବର କଥାଏ ଶ୍ରୀହରି । ମନରେ ପଡ଼ିଲା ମୋହରି ॥
ପଶ୍ଚିମେ ଚନ୍ଦ୍ର ଉଦେ ହୋଇ । ସେ କପାଁ ପୂର୍ବକୁ ଗମଇ ॥
ପୂର୍ଣ୍ଣିମୀ କାଳ ମଧ୍ୟେ ହେଲେ । ପୂର୍ବଦଗରେ ସେ ଉଇଁଲା ॥
ଏକଥା କହ ନାରାୟଣ । ନମଇଁ ତୁମ୍ଭର ଚରଣ ॥

ରତ୍ନପାଦୁକା ଉବାଚ

ରତ୍ନ ପାଦୁକା କହେ ବାଣୀ । ଯାହା ତୁ ପଚାରିଲୁ ପୁଣି ॥
ଯାହା ମୁଁ କହିଲି ପୂର୍ବରେ । ସେ କଥା ନ ଧର ହେତୁରେ ॥
ଏବେ କହିବା ଶୁଣ ତୁହି । ଚନ୍ଦ୍ରମା ଯେମନ୍ତେ ଉଅଁଇ ॥
ପୁଣି ମନରେ ବିଚାରଇ । ରବ ମୁ ହୋଇବ ବୋଲଇ ॥
ଏମନ୍ତ ବିଚାରି ମନରେ । ପୂର୍ବରେ ଉଅଁଇ ସ୍ୱଧୀରେ ॥
ସୂର୍ଯ୍ୟ ସଙ୍ଗତେ ନ ଗଚ୍ଛଇ । ଲଜ୍ଜା ପାଇଣ ସେ ଅସଇ ॥
ଏହା ଶୁଣିଣ ଭକ୍ତ ମନେ । ପୁଣିହିଁ ପଚାରେ ବଦନେ ॥

ଉଦ୍ଧବ ଉବାଚ ।

ବୋଲଇ ଶୁଣ ଭଗବାନ । କହିଲ ଉତ୍ତମ ଲକ୍ଷଣ ॥
ଚନ୍ଦ୍ରମା ଲଜ୍ଜା ଯେ ପାଇଲା । ପୁଣି କିପାଇଁ ଉଦେ ହେଲା ॥

ଏ କଥା କହ ଅନ୍ତର୍ଯ୍ୟାମୀ । ନମଇ ପାଦପଦ୍ମେ ପୁଣି ॥
ଏମନ୍ତ ଶୁଣି ଦୟାନିଧି । କହନ୍ତି ସୋମଙ୍କର ବିଧି ॥

ରତ୍ନପାଦୁକା ଉବାଚ ।

ଶୁଣ ତୁ ଦତ୍ତାତ୍ରେୟ ସୁତ । ଯାହା ପୁଚ୍ଛିଲୁ ଏହା ତତ୍ତ୍ୱ ॥
ଚନ୍ଦ୍ରମା ପୁଣି ପାସୋରିଲେ । ଈଶ୍ୱର ଆଜ୍ଞା ସହୁଁ ହେଲେ ॥
ଯେସନେ ଜନ୍ତୁ ଜନ୍ମ ହୋଇ । ପୂର୍ବର କଥା ପାସୋରଇ ॥
ସେହି ପ୍ରକାରେ ତା ହୃଦର । ବସ୍ତୁର ଗଲା ପାରବର ॥
ଶୁଣି ଉଦ୍ଧବ ତୋଷମନ । ନମିଲା ଗୋବିନ୍ଦ ଚରଣ ॥
ପରୀକ୍ଷ ଶୁଣି ହେଲା ତୋଷ । କହନ୍ତି ବ୍ୟାସଙ୍କର ଶିଷ୍ୟ ॥
ଶ୍ରୀରତ୍ନପାଦୁକାର ବାଣୀ । ମୁଜନେ ତୋଷ ହୁଅ ଶୁଣି ॥
ଶ୍ରୀରତ୍ନପାଦୁକାରଠାରେ । ମୋ ମନ ରହୁ ନିରନ୍ତରେ ॥
କହେ ଗୋବିନ୍ଦ ଅବଧୂତ । ନୃସିଂହ ପାଦେ ଦେଇ ଚିତ୍ତ ॥
ସେ ପ୍ରଭୁ ଦୟା ସହୁଁ କଲେ । ଏ ପଦ ହୃଦରୁ ଫୁରିଲେ ॥
ପଣ୍ଡିତେ ନ ଧରିବ ଦୋଷ । ମୁଁ ତୁମ୍ଭ ଦାସଙ୍କର ଦାସ ॥

ଇତି ଶ୍ରୀ ରତ୍ନପାଦୁକା ଉଦ୍ଧବ ସମ୍ବାଦେ ଶୁକ ପରୀକ୍ଷ କଥନେ ଚନ୍ଦ୍ର ସୂର୍ଯ୍ୟ ଅତଯାତ ବର୍ଣ୍ଣନେ ନାମ ପଞ୍ଚମୋଽଧ୍ୟାୟଃ ॥



## ଷଷ୍ଠ ଅଧ୍ୟାୟ ।

ଶ୍ରୀ ଶୁକ ଉବାଚ ।

ଶୁକ କହନ୍ତି ରାଜା ଆଗେ । ହରି ଭକତ ଅନୁରାଗେ ॥
କହନ୍ତି ରାଜା ପରୀକ୍ଷକୁ । ଯାହା ତୁ ପୁଚ୍ଛିଲୁ ଆମ୍ଭଙ୍କୁ ॥
ସେକଥା କହିଲୁଁ ତ ତୋତେ । ଯାହା କହିଲେ ଭକ୍ତହିତେ ॥
ଏମନ୍ତ କହି ଶୁକ ମୁନି । ମଉନ ହୋଇ ଭାବ ଘେନି ॥
ଶୁଣି ପରୀକ୍ଷ ଗଦ ଗଦ । ନମିଲା ଗୋବିନ୍ଦର ପାଦ ॥
ବସନ ଅଳଙ୍କାର ଯେତେ । ଥୋଇଲା ମୁନିଙ୍କ ଅଗ୍ରତେ ॥

ଧୂପ ଯେ ଦୀପ ନଇବେଦ୍ୟ । ଦେଇ ପୂଜିଲା ମୁନି ପାଦ ॥
ବହୁତ ପୂଜା ରଜା କଲା । ଚରଣେ ବନ୍ଦୋଇ ଶୋଇଲା ॥
ଉଠି ଯୋଡ଼ଇ ଶିରେ କର । ପୁଚ୍ଛଇ ମୁନିଙ୍କ ପଯ୍ୟର ॥
ବୋଲଇ ଶୁଣ ମୁନିବର । କଥାଏ ପୁଚ୍ଛିବି ସ୍ଥିର ॥
ଅଜ୍ଞା ଯେ ଦେଇ ବାକ ମୋତେ । ସଂସାରୁ ତରିବି ଯେମନ୍ତେ ॥
ହରିଙ୍କ କଥା ଭକ୍ତ ଅଗେ । ତାହା କହିବ ଅନୁରାଗେ ॥
ଅବର ଯେତେ କଥାମାନ । କହିଲେ ପ୍ରଭୁ ଭଗବାନ ॥
ଏମନ୍ତ ରଜା ବାକ୍ୟ ଶୁଣି । ଆନନ୍ଦେ କହେ ମହାମୁନି ॥

ଶ୍ରୀ ଶୁକ ଉବାଚ ।

ଶୁଣ ରଜନ ଏବେ ତୁହି । ଯାହା କହିଲେ ଭବଗ୍ରାହି ॥
ଯେଣୁ ପ୍ରସନ୍ନ କଲୁ ମୋତେ । ଶୁଣ କହିବା ଏକ ଚିତ୍ତେ ॥

ଉଦ୍ଧବ ଉବାଚ ।

କହେ ଉଦ୍ଧବ କରଯୋଡ଼ । ଶ୍ରୀହରି ଚରଣରେ ପଡ଼ି ॥
ହେ ନାଥ ବ୍ରହ୍ମାଣ୍ଡ ଈଶ୍ବର । ଶୁଣିଲି ପୂର୍ଯ୍ୟର ବଚର ॥
ତୁ ହରି ଦୟା କରି ଚିତ୍ତେ । କହିଲୁ ଚନ୍ଦ୍ର ସୂର୍ଯ୍ୟ ଯେତେ ॥
ନମସ୍ତେ ପ୍ରଭୁ ନାରାୟଣ । ନମସ୍ତେ ପରମ କାରଣ ॥
ନମସ୍ତେ ଦେବକୀ ନନ୍ଦନ । ନମସ୍ତେ ଶ୍ରୀ ମଧୁସୂଦନ ॥
ନମସ୍ତେ ଜଗତ ଈଶ୍ବର । ଭବ ସଂସାରୁ ପାରିକର ॥
ତୁମ୍ଭେ ବୋଇଲ ବ୍ରହ୍ମ ଅଛି । କହ ହେ ପ୍ରଭୁ ଶିରିବର ॥
ସେ ବ୍ରହ୍ମ କେମନ୍ତ ଅଟଇ । କେଉଁ ସ୍ଥାନରେ ସେହୁ ଥାଇ ॥
କେମନ୍ତେ ଧାରଣା ଧିଆନ । କହ ହେ କମଳା ରମଣ ॥
ଏମନ୍ତ ତାହା ତହୁଁ ଶୁଣି । ରତ୍ନପାଦୁକା କହେ ବାଣୀ ॥

ରତ୍ନପାଦୁକା ଉବାଚ ।

ହରି କହନ୍ତି ନାରାୟଣ । ଶୁଣ ଭକତ ବ୍ରହ୍ମଗୁଣ ॥
ତୋହର ମସ୍ତକ ଭିତରେ । ରହିଛି ଶୂନ୍ୟର ଶିଖରେ ॥

ତା ରୂପ କେ କହିବ ଅନ୍ତ । ଯାହାକୁ ନ ଜାଣେ ବେଦାନ୍ତ ॥
ତହିଁରେ ଯୋଗ ଯେତେ ହୋଇ । କହିବା ଶୁଣ ମନ ଦେଇ ॥
ଏ ଯୋଗ କେହି ନ ଜାଣଇ । ଆଦ ଗର୍ଭରେ ସେ ହୁଅଇ ॥
ଯେକାଳେ ସୃଷ୍ଟି ନାଶ ଗଲା । ବ୍ରହ୍ମାଦି କେହି ନ ରହିଲା ॥
ବିରାଟ ପୁରୁଷ ଗର୍ଭରେ । ଯେତେକ ଥିଲେ ତା ଶରୀରେ ॥
ବିଷ୍ଣୁ ଯେ ରୁଦ୍ର ଆଦି କରି । ସମସ୍ତେ ପ୍ରଳୟ ବିଚାରି ॥
ପଶିଲେ ମୋର ଅଙ୍ଗେ ଯାଇ । ମୁଁ ପୁଣି ଶକ୍ତିରେ ସମ୍ଭାଇ ॥
ଶକ୍ତି ଯେ ବ୍ରହ୍ମରେ ମିଶିଲା । ଏଣେ ବିରାଟ ନାଶ ଗଲା ॥
ବ୍ରହ୍ମହିଁ ଶୂନ୍ୟ ଆବୋରିଲା । ଏମନ୍ତେ ମହାଶୂନ୍ୟ ହେଲା ॥
ସେ ଶୂନ୍ୟ କେତେକାଳ ଗଲା । ବ୍ରହ୍ମ ଯେ ନିଷ୍ଟେନ୍ତେ ରହିଲା ॥
ଚନ୍ଦ୍ର ସୂର୍ଯ୍ୟତ କେହି ନାହିଁ । ପଞ୍ଚଭୂତାଦି ଆଉ କାହିଁ ॥
ଏମନ୍ତେ ହୋଇଣ ପୁରୁଷ । ଶୂନ୍ୟରେ କରିଅଛି ବାସ ॥
ଶୁଣି ଉଦ୍ଧବ ପଚାରିଲା । ଶେଷ୍ମ ପ୍ରଭୁ ସଂଶୟ ଲାଗିଲା ॥
ସେ ଶୂନ୍ୟ ଅଛଇଟି କିସ । ଶୂନ୍ୟରେ କରିଅଛି ବାସ ॥
ଶୁଣି କହନ୍ତି ଚକ୍ରଧର । ଶୁଣ ଉଦ୍ଧବ ତା ଉତ୍ତର ॥
ସେ ଶୂନ୍ୟ ଯୋଗମାୟା କହି । ଅକ୍ଷୟ କ୍ଷୟ ସେ ନୁହଇ ॥
ଯେସନେ ଝୁଇ ପଡ଼ୁଥାଇ । ହାଣିଲେ ନିଧନ ନୁହଇ ॥
ସେହି ପ୍ରକାରେ ଆଦି ମାତା । ପ୍ରକଟେ ହୋଇଣ ଶକତା ॥
ବ୍ରହ୍ମ ତାହାର ପରେ ଥାଇ । ଏଣୁ ପ୍ରଳୟ ନ ଲାଗଇ ॥
ଏମନ୍ତେ କେତେ କାଳ ଗଲା । ବ୍ରହ୍ମ ତା ହୃଦେ ଶୋଇଥିଲା ॥
ପୁଣିହିଁ କେତେ କାଳ ଯାନ୍ତେ । ଦେଖି ବିଚାର କଲା ଚିତ୍ତେ ॥
ଗର୍ଭ ଉପରେ ଏ ରହିଲା । ଧ ଯାର ପୁଷ ଖେଳ ଗଲା ॥
ଏମନ୍ତ ବିଚାର ମନରେ । ମାୟା ସେ କଲା ଅତ୍ୟପରେ ॥
ଯୋଗିନୀ ରୂପ ଏକ କଲା । ଶୂନ୍ୟ ଭିତରେ ଦେଖାଇଲା ॥
ଯେସନେ ଜଳିରେ ଫୁନସ । ନରଙ୍କ ଛତ୍ର ନିଏ ହରି ॥
ସେହି ପ୍ରକାରେ ବ୍ରହ୍ମଛତ୍ର । ହରି ସେ ନେଲାକ ଭୁବତ ॥
ବ୍ରହ୍ମ କାମରେ ବଶ ହେଲା । ତକ୍ଷଣେ ବିନ୍ଦୁ ଉଛୁଳିଲା ॥

ରେତା ପାଇଲେ ବ୍ରହ୍ମେ ପୁଣ । କରେ ଧଇଲେ ତତକ୍ଷଣ ॥
ବିନ୍ଦୁକୁ କରେ ଛନ୍ତି ଧରି । ପକାଇ ଲେଢ଼ନ୍ତି ସେ ବାରି ॥
ମନେ ବିଷାଦ ବ୍ରହ୍ମ ହୋଇ । ପୁଣହୁଁ ଚିତ୍ତେ ବିଚାରଇ ॥
ଏମନ୍ତ ବିଚାର ମନରୁ । କନ୍ୟାଏ କାଢ଼ିଲେ ଶରୀରୁ ॥
ସ୍ତିରି ବା ପୁରୁଷ ନୁହଇ । ଏମନ୍ତ ରୂପ ଜାତ ହୋଇ ॥
ଦୁଇ ଜାନୁର ମଧ୍ୟେ ଜାଣି । କାଟିଲେ କାଣି ଲକ୍ଷେ ପୁଣି ॥
ସେ ଗାର ଗର୍ଭକୁ ଫିଟିଲା । ନାଭିରେ ପଦ୍ମେକ ହୋଇଲା ॥
ଉତ୍ପତ୍ତି ଦ୍ୱାର ସେ ବୋଲାଇ । ଦେଖିଣ ବ୍ରହ୍ମ ତୋଷ ହୋଇ ॥
ଅପଣା ବୀଜ କରେ ଧରି । ମନ୍ତ୍ରେକ ବଦନୁ ଉଚ୍ଚାରି ॥
ବ୍ରହ୍ମ ଯେ ଗାୟତ୍ରୀ ପଢ଼ିଲେ । ଭାଗେକ ତହିଁରୁ କାଢ଼ିଲେ ॥
ବାକି ରହିବା ଗାୟତ୍ରୀ । ପଢ଼ିଲେ ପ୍ରଭୁ ଦଇ ତାରି ॥
ଅବର ଭାଗେକ ବାଣ୍ଟିଲେ । ଏମନ୍ତେ ବେନି ଭାଗ କଲେ ॥
ପୁଣହିଁ ରୁଦ୍ର ଗାୟତ୍ରୀ । ପଢ଼ିଲେ ଯୋଗାନ୍ତ ବିସ୍ତାରି ॥
ଅବର ଯେତେ ବୀର୍ଯ୍ୟ ଥିଲା । ଶେଷ ଭାଗେକ ବୋଲାଇଲା ॥
ଏମନ୍ତେ ତିନି ଭାଗ କରି । ମନ୍ତ୍ରରେ ଶେଷଭାଗ ଧରି ॥
ଯେବଣ ଘର ନକ୍ଷେ କଲେ । ତହିଁରେ ବୀର୍ଯ୍ୟ ମେଲିଦେଲେ ॥
ସେ ବୀର୍ଯ୍ୟ ମନ୍ତ୍ର ବଳେ ଗଲା । ନାଭି କମଳେ ସମ୍ଭାଇଲା ॥
ପଦ୍ମ ଯେ ଫୁଟି ରହିଥିଲା । ବିନ୍ଦୁ ପଡ଼ନ୍ତେ ମୁଦି ହେଲା ॥
ଜଳ ପଡ଼ନ୍ତେ ଫୁଲ ହୋଇ । ଯେସନେ ଟଳେ ଜଳ ଥାଇ ॥
ଏମନ୍ତେ କେତେ କାଳ ଗଲା । ବିନ୍ଦୁକୁ ଗର୍ଭରେ ଧଇଲା ॥
ସେ ଦେବୀ ତାଙ୍କ ପାଶୁ ଯାଇ । ଏକାନ୍ତେ ଶୂନ୍ୟରେ ଭ୍ରମଇ ॥
ଗର୍ଭେ ତାହାର ପୁତ୍ର ତିନି । ରହି ଅଛନ୍ତି ଦେହ ଘେନି ॥
ବ୍ରହ୍ମ ଯେ ପୁଣି ବିଚାରିଲା । ଶୂନ୍ୟରେ ପୁରେକ ରଚିଲା ॥
ସେ ଶୂନ୍ୟପୁରେ ସେହି ଦେବୀ । ରହି ଅଛନ୍ତି ଭଇରବୀ ॥
ପୁଣି ସେ କେତେ କାଳ ଗଲା । ସେ ଦେବୀ ଗର୍ଭ ପ୍ରସବିଲା ॥
ପ୍ରଥମେ ପୁତ୍ର ଜାତ କଲା । ଚତୁର୍ମୁଖରେ ସେ ଜନ୍ମିଲା ॥
ଦିବ୍ୟ ସୁନ୍ଦର ତାର କାନ୍ତି । ସୁନ୍ଦର କାଳ ଅର୍କ ପ୍ରାନ୍ତି ॥

ଦେଖିଣ ଦେବୀ କାମଭରେ । ପୁତ୍ରକୁ ଧଇଲେ କୋଳରେ ॥
ବୋଇଲେ ପୁତ୍ରମୁଖ ଚାହିଁ । ମୋତେ ରମଣ କର ତୁହି ॥
ଶୁଣିଣ ପୁତ୍ର ନାସ୍ତି କଲା । ଏକଥା ନୁହଇ ବୋଇଲା ॥
କୋପେ ସେ ଦେବୀ ଅନାଇଲା । ତକ୍ଷଣେ ପୁତ୍ର ଭସ୍ମ ଗଲା ॥
ପୁଣି ସେ କାମରେ ଆରତ । ହୋଇଛି ଦେବୀଙ୍କର ଚିତ୍ତ ॥
ପୁଣି ପୁତ୍ରେକ ଜାତ କଲା । ଦିବ୍ୟ ସୁନ୍ଦର ସେହୁ ବଳା ॥
ଦିଶଇ ନୀଳବର୍ଣ୍ଣ ହୋଇ । ଚତୁର୍ଭୁଜରେ ଶୋଭା ପାଇ ॥
ପୁତ୍ରର ବଦନ ଚାହିଁଲା । ସେ ଦେବୀ ବଚନ ବୋଇଲା ॥
ଶୁଣ ରେ ସୁତ ମୋ ବଚନ । ତୋ ଭାଇ ଚତୁର ଆନନ ॥
ସେ ମୋତେ ରମଣ ନ କଲା । ବୋଇଲେ ନାସ୍ତି ସେହୁ କଲା ॥
ତେଣୁ ମୁଁ କଲି ଭସ୍ମ ତାକୁ । ଏବେ ମୁଁ କହୁଛି ତୁମ୍ଭଙ୍କୁ ॥
ତୁ ଯେବେ ରମଣ ନ ଦେବୁ । ତାହାର ପ୍ରାୟେ ଭସ୍ମ ହେବୁ ॥
ଏବେ ସୁରତ ମୋତେ ଦିଅ । ଏ ଦେହ ଯେନ ସୁଖେଥାଅ ॥
ତା ଶୁଣି ନାସ୍ତି ସେହୁ କଲା । ଦେବୀ ବଚନେ ଭସ୍ମ ହେଲା ॥
ମନରେ ଦେବୀ ବିସ୍ମିଲା । ପୁଣି ପୁତ୍ରେକ ଜାତ କଲା ॥
ଦିବ୍ୟ ଶରୀର ସେ ଦିଶଇ । ଯେସନେ ଶ୍ୱେତ ଗିରି ହୋଇ ॥
ପଞ୍ଚ ବଦନ ତିନି ନେତ୍ର । ଦଶ ଭୁଜରେ ଶୋଭା ସେତ ॥
ମୁଖକେ ତିନି ନେତ୍ର ହୋଇ । ପନ୍ଦର ଚକ୍ଷୁ ଶୋଭା ପାଇ ॥
ଚରଣ ବେନି ଯେ ଅଛଇ । ଉପମା ନ ଦିଶଇ କାହିଁ ॥
ଏମନ୍ତ ଦେଖି ତା ସ୍ୱରୂପ । ଦେବୀ ପାଇଲା ମନେ ତାପ ॥
ପୁତ୍ରର ବଦନ ଚାହିଁଲା । କାମେ ସେ ଆରତ ହୋଇଲା ॥
ବୋଲଇ ପୁତ୍ର ମୁଖ ଚାହିଁ । ସୁରତ ଦିଅ ମୋତେ ତୁହି ॥
ନୋହିଲେ ଭସ୍ମ ତୁ ହୋଇବୁ । ନୋହିବ କୋପେ ଜଳିଯିବୁ ॥
ଦେଖ ତୋ ବେନି ଭାଇ ପୁଣ । ଭସ୍ମ ହୋଇଲେ ତତକ୍ଷଣ ॥
ତୁ ଏହି ସ୍ଥାନେ ଭସ୍ମ ହେବୁ । ଯେବେ ସୁରତ ନ କରିବୁ ॥
ସୁରତ ମୋହସଙ୍ଗେ କଲେ । ଅମର ହୋଇଥିବୁ ଭଲେ ॥
ଏମନ୍ତ ବୋଲି ଦେବୀ ଚାହିଁ । ପୁତ୍ରକୁ କୋପେଣ ଅନାଇଁ ॥

ଶୁଣିଣ ପୁତ୍ର ଭସ୍ମ କଲା । ମାତାକୁ ବଚନ ବୋଇଲା ॥
ଏମନ୍ତ ନୁହଇ ଜନନୀ । ଯାହା କହିଲ ତୁମ୍ଭେ ପୁଣି ॥
ନ କଲେ ଭସ୍ମତ କରିବ । ଜଗତ କେଣ୍ଡୁ ଭୁଆଇବ ॥
ଏମନ୍ତ ବୋଲିଣ ବୋଇଲା । ତକ୍ଷଣେ ମଉନେ ରହିଲା ॥
ଏହା ସେ ଭଜିଲା ବିଗ୍ରହ । ଭସ୍ମତ କରିବ ଏ ନାଶି ॥
ନନ୍ଦନ କହେ ମାତା ଶୁଣ । ଏହାଙ୍କୁ ଦିଅ ଜୀବଦାନ ॥
ଶୁଣି ବୋଇଲେ ଅଢ ଦେବୀ । ଏହାଙ୍କୁ ମୁହିଁ ଜୀଆଇବ ॥
ତୁ ଯେବେ ସ୍ତବନ କରିବୁ । ଏହୁ ଦୁହିଁଙ୍କି ବଞ୍ଚାଇବୁ ॥
ଏମନ୍ତ ବୋଲି କଟାକ୍ଷରେ । ଗୃହିଁଲା କାମର ଅତୁରେ ॥
ପୁତ୍ରର ଦେହେଁ କାମ ବାର । ମାତାକୁ ଲୋଡ଼ିଲା ସେ ହର ॥
ଏହାଙ୍କୁ ଜୀଅଅ ବୋଇଲା । ମାତାକୁ ଧରି କୋଳ କଲା ॥
ତାହା ବଚନ ଦେବୀ ଶୁଣି । ହସି ବୋଇଲା ଜୀଅଁ ବେନି ॥
ଅମୃତ ନୟନେ ଅନାଇ । ଦୁଇ ପୁତ୍ରକୁ ସେ ଜୀଆଇ ॥
କାମରେ ହୋଇଲା ଅରତ । ସାନ ପୁତ୍ରର ସଙ୍ଗେ ରତ ॥
ବେନି ପୁତ୍ର ଯେ ଭସ୍ମ ଥିଲେ । ଦେବୀଙ୍କ ବଚନେ ଜୀଇଲେ ॥
ମାତା ପୁତ୍ରଙ୍କ ରତି ଦେଖି । ଚଳିଲେ ତକ୍ଷଣେ ଉପେକ୍ଷି ॥
କହିଲେ ନସ୍ୱକାର ପାଶ । ଜନନୀ କଲା ସର୍ବ ନାଶ ॥
ସାନ ପୁତ୍ରକୁ କୋଳେ ଧରି । ସ୍ତବନ ଇଚ୍ଛା କଲା ନାଶି ॥
ଅମ୍ଭଙ୍କୁ ଭସ୍ମ କରି ଥିଲା । ପୁଣିହିଁ ବଞ୍ଚାଇଣ ଦେଲା ॥
ଏମନ୍ତ କହି ବେନିଭାଇ । ନସ୍ୱକାରଙ୍କ ପାଶେ ରହି ॥
ସାନ ପୁତ୍ରର ସଙ୍ଗେ ରତି । କରିଣ ହୋଇଲା ନିପୁତ ॥
ସଙ୍ଗତେ ପୁତ୍ରକୁ ଘେନିଣ । ଗଲା ସେ ନସ୍ୱକାର ସ୍ଥାନ ॥
ଜନନୀ ପୁତ୍ର ବେନି ଜଣ । ନମିଲେ ଅନାଦ୍ୟ ଚରଣ ॥
ଦେଖି କହନ୍ତି ଅଦ୍ଧନାଥ । ଶୁଣ ଦେବୀଙ୍କ ତନୁସୁତ ॥
ବଡ଼ କୁମର ବ୍ରହ୍ମା ନାମ । ସୃଷ୍ଟି ସେ କରୁ ଅନୁପାମ ॥
ମୋହର ଅଂଶ ଦେହେ ଘେନ । ମଝିଅ ବିଷ୍ଣୁ ହେଉ ପୁଣି ॥
ସାନ ହେ ହରିଲା ମାତାକୁ । ଏ ଦୋଷ ଲଗିଲା ତାହାକୁ ॥

ଏ ପୂର୍ବ ଦୋଷ ପାରଯିବ । ଯେବେ ଏ ବ୍ରହ୍ମଜ୍ଞାନୀ ହେବ ; ॥
ଏହି ଯୋଗକୁ ଅଭ୍ୟାସିଲେ । ସେ ଦୋଷ ପାରହେବ ଭଲେ ॥
ଏମନ୍ତ ବୋଲି ନଗକାର । ନାମ ତାହାର ଦେଲେ ହର ॥
ଦକ୍ଷକୁ ଗୃହିଁ ନଗକାର । ବୋଇଲେ ଶୁଣ ରେ କୁମର ॥
ଦୈତ୍ୟ ନାଶନେ ନାମ ହର । ହୋଇବ ଜଗତେ ତୋହର ॥
ହର ବିଧାତା ହର ଗଲେ । ସଂସାର ଭ୍ରମଣ କରିଲେ ॥
ଏମନ୍ତ ବୋଲି ନଗକାର । ମଣ୍ଡନେ ରହିଲେ ଶୂନ୍ୟର ॥
ପାପ ଶୁଣିଣ ହର ମନେ । ପୁଚ୍ଛା ସେ କଲା ବିଦ୍ୟମାନେ ॥
ବୋଇଲେ ଶୁଣ ଅଦନାଥ । ଏ ପାପୁ କରିବ କୃତାର୍ଥ ॥
କର୍ଣ୍ଣେ ତାହାର ବାଣୀ ଶୁଣି । କହନ୍ତି ଶୂନ୍ୟବାସୀ ପୁଣି ॥
ଯାହା କହିଲେ ନଗକାର । ଶୁଣ ଉଦ୍ଧବ ଜ୍ଞାନସାର ॥
କେବଳ ଶୁଣିଅଛି ମୁହିଁ । ବ୍ରହ୍ମା ଯା ଶଙ୍କରକୁ କହି ॥
ଏବେ ତା କହିବା ହୋ ଶୁଣ । ଯୋଗାନ୍ତ ଅଦ ଯେ ଲକ୍ଷଣ ॥
କହନ୍ତି ପ୍ରଭୁ ନିତ୍ୟବାସୀ । ହର ଶୁଣନ୍ତି ହୋଇ ତୁଷି ॥
ରତ୍ନ ପାଦୁକା କହେ ଧୀରେ । ଭକତ ଉଦ୍ଧବ ଆଗରେ ॥
ତୋହର ମସ୍ତକ ମଧରେ । ଭ୍ରୂଲତା ଲଲାଟ ଉପରେ ॥
ତହିଁରେ ବ୍ରହ୍ମ ଅଛି କହି । ନିତ୍ୟ ଅକୃତ ମୋର ଧାଇ ॥
ରାଧା କୃଷ୍ଣଙ୍କ ମେଳ ଯହିଁ । ଯୋଗମାୟା ବ ଛନ୍ତି ତହିଁ ॥
ତ୍ରିକୋଣ ହୋଇ ରହିଅଛି । ସେହି ଠାବରେ ବ୍ରହ୍ମ ଅଛି ॥
ଷଷ୍ଠ ଅଷ୍ଟମ ଦଳ ଜାଣ । ଏରୂପେ କରଛି ଭ୍ରମଣ ॥
ଷୋଡ଼ଶ ବତଷ ହୋଇଛି । ଚୌଷଠି ଦଳ ପ୍ରକାଶିଛି ॥
ସମସ୍ତେ ସ୍ତ୍ରିୟ ତହିଁ ଛନ୍ତି । ପୁରୁଷ ଅଙ୍ଗ ଯେ ନାହାନ୍ତି ॥
ସମସ୍ତେ ନଗାନା କୁମାରୀ । ଅଛନ୍ତି ନଅଁକୁ ଅବୋର ॥
ଯେ ଯାହା ସେବାରେ ଅଛନ୍ତି । ତ୍ରିପୁର ଆଜ୍ଞାରେ ଚଳନ୍ତି ॥
ସେ ସ୍ଥାନେ ପୁରୁଷ ଯେ ହୋଇ । ଏକା ମାଦକ ଛନ୍ତି ରହି ॥
କୃଷ୍ଣହିଁ ଅନ ଅଉ ନାହିଁ । କେବଳ ମହାନିତ୍ୟ ସେହି ॥
ଏହାଙ୍କୁ ଚିନ୍ତା କରୁ ଯେବେ । ପାପରୁ ମୋକ୍ଷ ହେବୁ ତେବେ ॥

ଏମନ୍ତ କହି ନିରାକାର । ପୁଣି କହନ୍ତି ଯୋଗସାର ॥
ରତ୍ନପାଦୁକା କହେ ଧୀରେ । ଶୁଣ ଭକତ ମନ ସ୍ଥିରେ ॥
ପରୀକ୍ଷେ ଶୁକମୁନି କହେ । ଏ ବ୍ରହ୍ମ ସ୍ଥାନର ନିର୍ଣ୍ଣୟେ ॥
କହେ ଗୋବିନ୍ଦ ଅବଧୂତ । ଶ୍ରୀଗୁରୁ ପାଦେ ଦେଇ ଚିତ୍ତ ॥
କୃଷ୍ଣ ମୋ ଅବଧୂତ ଗୁରୁ । ଶିକ୍ଷା ପାଇଲି ତାଙ୍କ ଠାରୁ ॥
ତେଣୁ ମୋ ମନର ଆନନ୍ଦ । ସେବଇ ନରସିଂହ ପାଦ ॥
ମୁଁ ଘର ଅଟଇ ବାଲ୍ମୁତ । ଖଣ୍ଡେଶ୍ୱ କୁଳରେ ସମ୍ଭୂତ ॥
ଶ୍ରୀକୃଷ୍ଣ ମୋତେ ଦୟାକଲେ । ବୈରାଗ୍ୟ କରଣ ଆଣିଲେ ॥
ମାତା ପିତାଙ୍କୁ ମୋର ଥିଲେ । ସୋଦର ବନ୍ଧୁ କୁଳମେଳେ ॥
ବାଳକ ସମୟରେ ପୁଣି । ବୈରାଗ୍ୟ କଲେ ଚକ୍ରପାଣି ॥
ତେର ବରଷର ସମ୍ପୂର୍ଣ୍ଣେ । ବୈରାଗ୍ୟ ଜାତ ହେଲା ମନେ ॥
ଗୁରୁଙ୍କ ସେବା ମୁଁ ନ କଲି । ସ୍ୱଅର୍ଥେ ଏତେ ଧନ ନେଲି ॥
କୋଡ଼ିଏ ବରଷରେ ମୋର । କବିତ୍ୱ ହୋଇଲା ପ୍ରଚୁର ॥
ଏକ ବିଂଶତି ବୟସରେ । ଏ ଗୀତ ରଚନା ମୁଁ କରେ ॥
ଦୋଷ ନ ଧର କ୍ଷମାଜନ । ନମଇ ତୁମ୍ଭର ଚରଣ ॥
କହେ ଗୋବିନ୍ଦ ଅବଧୂତ । ରତ୍ନପାଦୁକା ଠାରେ ଚିତ୍ତ ॥
ଲେଖନକାର ଯେହୁ ହୋଇ । ସ୍ୱଭାବେ ବାଳ୍ମୁତ ଅଟଇ ॥
ଦୂଷଣ ଥିବ ଅବା ଯେହି । ତା ଦୋଷ ନ ଧରିବ କେହି ॥
ନାମ ତା ଅଟଇ ଅଚ୍ୟୁତ । ରଖିବେ ତାକୁ ପଦ୍ମନେତ୍ର ॥

ଇତି ଶ୍ରୀ ରତ୍ନପାଦୁକା ଉଦ୍ଧବ କଥନେ ଶୁକ ପରୀକ୍ଷିତ ସମ୍ବାଦେ ହରି ନିରାକାର ଜ୍ଞାନ କଥନେ ନାମ ଷଷ୍ଠୋଽଧ୍ୟାୟଃ ।



## ସପ୍ତମ ଅଧ୍ୟାୟ ।

### ଶୁକ ଉବାଚ ।

କହନ୍ତି ଶୁକ ମୁନିବର । ଶୁଣ ହେ ଉତ୍ତରାକୁମର ॥

## ଉଦ୍ଧବ ଉବାଚ ।

କହେ ଉଦ୍ଧବ କରଯୋଡ଼ି । ରତ୍ନପାଦୁକା ତଳେ ପଡ଼ି ॥
ହେ ପ୍ରଭୁ କହ ଏବେ ମୋତେ । ବ୍ରହ୍ମର ଲକ୍ଷଣ କେମନ୍ତେ ॥
ଯୋଗ ଧାରଣା ଆଦି ପୁଣ । ତୋତେ କହିବା ସାର ଶୁଣ ॥
ଅନାଦି କହନ୍ତି ଶିବଙ୍କୁ । ଏବେ ମୁଁ କହିବି ତୁମ୍ଭଙ୍କୁ ॥
କହନ୍ତି ପ୍ରଭୁ ନିରାକାର । ଶୁଣ ତୁ ଯୋଗର ବିସ୍ତାର ॥
ଆସନ କମଳରେ ବସି । ପବନ ତୋଳିବ ଉଶ୍ବାସି ॥
ପଞ୍ଚମେ ପବନ ତୋଳିବ । ଛଡ଼ ଚକ୍ରକୁ ଯେ ଭେଦିବ ॥
ତ୍ରିକୂଟ ମଧ୍ୟକୁ ତା ନେବ । ପବନ ସ୍ଥିରେଣ ଟେକିବ ॥
ସେଠାରେ ବ୍ରହ୍ମରନ୍ଧ୍ର ଦ୍ୱାର । ହୋଇଛି ଉଆଣ ସେଠାର ॥
ସୂଚି ମୂନରେ ତହିଁ ବାଟ । ଲାଗିଛି ତହିଁରେ କବାଟ ॥
ତିଳ ସେପାର ପ୍ରାପ୍ତ ହୋଇ । ଦୁଇ ପାଖୁଡ଼ା ସେ ଦିଶଇ ॥
ଏ ଅଛି ଭ୍ରୂଲତା ଦ୍ୱୟରେ । ନାସିକା ତ୍ରିକୂଟ ମଧ୍ୟରେ ॥
ଦେବ ନାଶନ ସେହି ସ୍ଥାନ । ଅଛି ରହିଛି ବିଦ୍ୟମାନ ॥
କୁଣ୍ଡଳୀ ଆକାରରେ ଅଛି । ଦୁଇ ଫେଣା ତା ଦିଶୁଅଛି ॥
କିସ କହିବା ତାର ଜ୍ୟୋତି । ନୟୁନ କୋଟି ସୂର୍ଯ୍ୟକାନ୍ତି ॥
ବାମ ଯେ ଫେଣା ତାର ହୋଇ । କୋଟିଏ ଚନ୍ଦ୍ର ନ ଗଛଇ ॥
ଦକ୍ଷିଣ ଫେଣା ତା ହୋଇଲା । କୋଟିଏ ସୂର୍ଯ୍ୟ ନ ଗଛିଲା ॥
କିରଣ କୋଟି ସୂର୍ଯ୍ୟ ବଳ । ତାପେଣ ଦିଶଇ ଉଜ୍ଜ୍ୱଳ ॥
ଶୀତଳ ଦିଶେ ଆର ଫେଣା । କୋଟି ଚନ୍ଦ୍ରକୁ ସେହି ଜିଣା ॥
ଏ ବେନି ଫେଣାର ମଧ୍ୟରେ । ବାଟ ଯେ ପଡ଼ିଛି ସେଠାରେ ॥
ଉଜାଣି ସ୍ଥାନ ଯାକୁ କହି । ଉ ମର ଉକ୍ତ୍ୟଲେ ରହଇ ॥
ତହିଁ ଉପରେ ଗୋଲହାଟ । ଜୀବ ପରମ ତହିଁ ଭେଟ ॥
ତହିଁର ଉପରେ ଯେତେକ । କେ ତାହା କହିବ ବିବେକ ॥
ସେଠାରେ ନାହିଁ ବଡ଼ପଣ । ଗୁରୁ ଶିଷ୍ୟହିଁ ସମ ଜାଣ ॥
ତହିଁ ଯେ ଶିଷ୍ୟର ପଦ୍ମରେ । ଗୁରୁ ନମଇଁ ଭକତରେ ॥
ଏ କଥା ଅଟଇ ପ୍ରମାଣ । ଦୋଷ ନ ଧର ଜ୍ଞାନୀଗଣ ॥

କହନ୍ତ ପ୍ରଭୁ ନିରାକାର । ଶୁଣ ତୁ ସାଧନା ବିସ୍ତର ॥
ପ୍ରଥମ ଚକ୍ରକୁ ଟୋଳିବ । ମୂଷା ଯେ ସିଂହକୁ ଜିଣିବ ॥
ଦ୍ୱିତୀୟ ଚକ୍ରକୁ ଟୋଳିଲେ । ମୂଷା ମଞ୍ଜାର ଏକତୁଲେ ॥
ତୃତୀୟ ଚକ୍ରକୁ ଟୋଳିବ । ଅଯଶା ଦୋଳିକୁ ଜିଣିବ ॥
ଚତୁର୍ଥ ଚକ୍ରକୁ ଧରିବ । ମଣ୍ଡୁକୀ ହସ୍ତିକୀ ଗିଳିବ ॥
ପଞ୍ଚମ ଚକ୍ରକୁ ଟୋଳିଲେ । ମଶା ଗିଳିବ ଗିରି ଭଲେ ॥
ଛଡ଼ ଚକ୍ରକୁ ଯେ ଟୋଳିବ । ମୀନ ଯେ ସିନ୍ଧୁକୁ ଶୋଷିବ ॥
ଏମନ୍ତେ ସାଧନା ଭିଆଣ । ଶୁଣ ଶଙ୍କର ଦେଇ ମନ ॥
ଏମନ୍ତେ କହିଲେ ଅନାଦି । ହରର ହୋଇଲା ସମାଧି ॥
ତକ୍ଷଣେ ପାପକ୍ଷୟ ଗଲା । ଜଗତେ ଅମର ହୋଇଲା ॥
ତିନିଙ୍କି ସୃଜିଁ ନିରାକାର । ବୋଇଲେ ସୃଷ୍ଟି ଜାତକର ॥
ତାହାଙ୍କ ଆଜ୍ଞା ପରମାଣେ । ସୃଷ୍ଟି ସୃଜିଲେ ତିନିଜଣେ ॥
ଏମନ୍ତେ କହି ନାରାୟଣ । ତକ୍ଷଣେ ହୋଇଲେ ମଉନ ॥
ଉଦ୍ଧବ ଶିରେ ଦେଇକର । ସ୍ତୁତି ଯେ କଲାକ ଅପାର ॥
ନମସ୍ତେ ପ୍ରଭୁ ଜଗନ୍ନାଥ । ତୁହି ସେ ପ୍ରାଣି-ପଞ୍ଚଭୂତ ॥
ନମସ୍ତେ ପ୍ରଭୁ ନାରାୟଣ । ନମସ୍ତେ କମଳା ରମଣ ॥
ନମସ୍ତେ ପ୍ରଭୁ ତୋ ଚରଣ । କହ ହେ ବ୍ରହ୍ମର ଲକ୍ଷଣ ॥
ଏ ଯୋଗ ସାଧନା ଶୁଣିଲି । ବ୍ରହ୍ମ ନିର୍ଣ୍ଣୟ ନ ଜାଣିଲି ॥
କହ ହେ ପ୍ରଭୁ ନାରାୟଣ । ନମଇଁ ତୁମ୍ଭର ଚରଣ ॥
ଏମନ୍ତ ବୋଲି ଭକ୍ତମଣି । ଶିରେ ଯୋଡ଼ିଲା ବେନିପାଣି ॥

## ରତ୍ନପାଦୁକା ଉବାଚ ।

ରତ୍ନପାଦୁକା କହେ ଧୀରେ । ଶୁଣ ଉଦ୍ଧବ ମନସ୍ଥିରେ ॥
ସେ ଦ୍ୱାରେ ସର୍ପ ରହିଅଛି । ଗର୍ଜ୍ଜନ ସର୍ବଦା କରୁଛି ॥
ତିନିପୁରକୁ ତା ଶୁଭୁଛି । ବାଟକୁ ବେଢି ସେ ରହିଛି ॥
ହେବ ନାଶନ ତାର ନାମ । ସେଠାରେ ସର୍ପର ଆଶ୍ରମ ॥
ତହିଁ ଉପରେ ଦିବ୍ୟହାଟ । ଫିଟିଛି ତହିଁପରେ ବାଟ ॥

ନହିଁରେ କାଳିଁର ପାଟଣା । ଯହିଁ ଦ୍ୱାଦଶ ହୋଏ ବଣା ॥
ତହିଁରେ ବ୍ରହ୍ମ ଅଛି ଜହ୍ନ । ଦେହରୁ ଅଲଗ ଅଟଇ ॥
ଶୂନ୍ୟ ଆକାର ସେ ଅଟଇ । ଶବ୍ଦରେ ଥାଇ ନ ମିଶଇ ॥
ଶ୍ୱେତ ରକ୍ତ ପୀତ କଳା । ସମସ୍ତ ବାହାର ନୋହିଲା ॥
ତାରୂପ କେ କହିବ ଅନ୍ତ । ଯେସନେ ଦର୍ଶଇ ଆଦିତ୍ୟ ॥
ଏଣୁ ଏ ବ୍ରହ୍ମ ପ୍ରଭବମ୍ । ସୂର୍ଯ୍ୟଙ୍କ ବୋଲନ୍ତି ଏ ସର୍ବ ॥
ଯେଣୁ ଉପମା ନ ଦଶିଲା । ତେଣୁ ରବିଙ୍କ ଲକ୍ଷଦେଲା ॥
ପୁଣିହିଁ ସୂର୍ଯ୍ୟ ନ ଘଟଇ । କେବଳ ଉପଲକ୍ଷ ନାହିଁ ॥
ସେ ବ୍ରହ୍ମ ନ ଲାଗଇ କାହିଁ । ଜଳେ ଆଦିତ୍ୟ ଯେହ୍ନେ ଥାଇ ॥
ଅପ ଭିତରେ ଦିଶୁଥାଇ । ସେ ଯେହ୍ନେ ତାକୁ ନ ଲାଗଇ ॥
ବୃକ୍ଷର ଛାଇ ଯେହ୍ନେ ଥାଇ । ବୃକ୍ଷ ଶରୀରେ ନ ମିଶଇ ॥
ରଜ୍ଜୁ କରଣ ଯହିଁ ଥାନ୍ତି । ତହିଁରୁ ଅଲଗ ଅଟନ୍ତି ॥
ସୂର୍ଯ୍ୟର ରଶ୍ମିମାନ ଯେତେ । ତାକୁ ନ ଲାଗେ କଦାଚିତେ ॥
ଏରୂପେ ବ୍ରହ୍ମଦେହେ ଅଛି । ଶବ୍ଦରୁ ଅଲଗ ହୋଇଛି ॥
ସକଳ ଘଟରେ ପୂରିଛି । ଭିନ୍ନ ପ୍ରକୃତିରୁ ଦିଶୁଛି ॥
ସର୍ପାଦି ଗଜ ବ୍ୟାଘ୍ର ଯେତେ । ସ୍ଥାବର ଜଙ୍ଗମ ସହିତେ ॥
ଛପନ କୋଟି ଜୀବଗଣ । ରହିଛି ସର୍ବଘଟେ ପୁଣ ॥
ଉପମା କହିବା ବୁଝାଇ । ଶୁଣ ତୁ ସାବଧାନ ହୋଇ ॥
କୋଟିଏ ଜଳ ଘଟ ମଧ୍ୟେ । ଯେସନେ ସୂର୍ଯ୍ୟ ହୁଏ ଉଦେ ॥
ଏକାଯ୍ୟେଁ ସୂର୍ଯ୍ୟ ସର୍ବଠାଇଁ । ଘଟ ଘଟକେ ଦିଶୁଥାଇ ॥
ଯେହ୍ନେ ସୁବର୍ଣ୍ଣ ଅଳଙ୍କାର । ହୁଅଇ ସେ ନାନା ପ୍ରକାର ॥
ଏକାଠି କରି ମିଶାଇଲେ । ବାର ନୁହଇ ତାହା ଭଲେ ॥
ସେହି ପ୍ରକାରେ ବ୍ରହ୍ମହୋଇ । ଆବର କହିବା ବୁଝାଇ ॥
ଯେସନେ ଗୋରୁମାନେ ଥାନ୍ତି । କଳା ଯେ ଧଳା ସେ ହୁଅନ୍ତି ॥
ରଙ୍ଗ ଯେ ଆବର କପୁର । କେତେ ତା କହିବା ବିସ୍ତାର ॥
କ୍ଷୀର ଯେ ଶୁକଳ ଅଟଇ । କଳା କି ରଙ୍ଗ ସେ ନୁହଇ ॥
ଏହିପ୍ରକାରେ ଏକ ହୋଇ । ସକଳ ଶବ୍ଦରେ ଅଛଇ ॥

ଏହା ଜାଣିଲେ ଜ୍ଞାନୀଜନ । ତରିବେ ସଂସାର ଗହନ ॥
ମୂର୍ଖ ଯେ ଏହା ନ ଜାଣଇ । ସଂସାର ମଧ୍ୟେ ଭ୍ରମୁଥାଇ ॥
ଶୁଣ ଉଦ୍ଧବ ମନ ଦେଇ । ଏରୂପେ ବ୍ରହ୍ମ ବିଦ୍ୟା ହୋଇ ॥
ଉଦ୍ଧବ କର ଦେଇ ଶିରେ । ନମିଲା ଗୋବିନ୍ଦ ପଯ୍ୟରେ ॥
ବୋଲଇ ଯଦୁ ବୀରବର । ଶୁଣ ହେ ବ୍ରହ୍ମାଣ୍ଡ ଈଶ୍ୱର ॥
ସେ ବ୍ରହ୍ମ କ୍ଷୟ ତ ନୁହଇ । କାହା ଅଛିତେ ସେ ରହଇ ॥
ସେ ବ୍ରହ୍ମ କେତେ ବା ଅଛଇ । କାହାକୁ ଜନମ କରଇ ॥
ଜୀବ ଯେ ପରମ ହୋଇଲା । କେଉଁ ଏହାକୁ ଜାତକଲା ॥
ମନରୁ ଅହଙ୍କାର ହୋନ୍ତି । ଏମାନେ କେମନ୍ତେ ଜନ୍ମନ୍ତି ॥
ଏ ଅଧ ପଗ୍ଭରିଲି ଯେତେ । ମୋତେ ନାଥ କହ ଦୟା ଚିତ୍ତେ ॥

## ଭଗବାନୁବାଚ ।

ଉଦ୍ଧବ ବାକ୍ୟ ଶୁଣି ହସି । କହନ୍ତି ପ୍ରଭୁ ବ୍ରହ୍ମଋଷି ॥
ବୋଲନ୍ତି କମଳାରମଣ । ଶୁଣ ହେ ଭକତଜନପ୍ରାଣ ॥
ଘଣ୍ଟି ଯେ ଶବଦ ଶୁଭଇ । ଯେସନେ ଯହିଁ ଲୀନ ହୋଇ ॥
ତାହାକୁ ବ୍ରହ୍ମ ବୋଲି କହ । ଏଥେ ସଂଶୟ କିଛି ନାହିଁ ॥
ସେ ବ୍ରହ୍ମ ଆକାର ନୁହଇ । ଅଣ ଆକାର ସେ ବୋଲାଇ ॥
କ୍ଷୟ ଯେ ବୃଦ୍ଧି ସେ ନୁହଇ । ଯାହାର ପାଦ ପାଣି ନାହିଁ ॥
ସ୍ଥୂଳ ବା ସୂକ୍ଷ୍ମ ସେ ନୁହଇ । ଲମ୍ବ ପ୍ରଶସ୍ତ ତାର ନାହିଁ ॥
ବୁରୁଦ୍ଧ ନିଭ୍ରବନଠାରୁ । ଉଶ୍ୱାସ ଅଛଇ କପାରୁ ॥
ଲହୁଣି ଯେସନେ କୋମଳ । ତା ଠାରୁ ଅଛଇ ଦୁର୍ବଳ ॥
ସିନ୍ଦୂର ପ୍ରାୟ ସେ ଅଛଇ । ଗ୍ରୀଷମ କାଳେ ନ ଶୁଖଇ ॥
ରେଣୁରୁ ସାମାନ୍ୟ ଅଛଇ । ପବନ ନ ପାରେ ଉଡ଼ାଇ ॥
ଅନଳ ପ୍ରାୟେ ତେଜ ତାର । ଜଳନ୍ତୁ ଅଛଇ ଶୀତଳ ॥
ପାଣିନ୍ତୁ ତରଳ ଅଛଇ । ପୃଥ୍ୱୀନ୍ତୁ ବହୁଳ ସେ ହୋଇ ॥
କଳାନ୍ତୁ କଳା ସେ ହୋଇଲା । ଶ୍ୱେତନ୍ତୁ ଶ୍ୱେତ ବରଣିଲା ॥
ଅରକ୍ତୁ ଅରକ୍ତ ଅଛଇ । ପୀତନ୍ତୁ ପୀତ ସେ ବୋଲାଇ ॥
ସ୍ତ୍ରିରୀ ବା ପୁରୁଷ ନୁହଇ । କ୍ଷୟ ବୃଦ୍ଧି ବା ତାର କାହିଁ ॥

ଏମନ୍ତ ବ୍ରହ୍ମର ଲକ୍ଷଣ । ଶୁଣ ଉଦ୍ଧବ ଦେଇ ମନ ॥
ଜଗତ ସଂସାର ଅବୋର । ଅଛଇ ସର୍ବଘଟେ ପୂର ॥
ଏମନ୍ତେ ବ୍ରହ୍ମରୂପ ହୋଇ । ସେଠାକୁ ଧ୍ୟାନ କର ତୁହି ॥
ସେଠାରେ ଗ୍ରହ ଦିବା ନାହିଁ । ଚନ୍ଦ୍ର ସୂର୍ଯ୍ୟଙ୍କ ଗମ୍ୟ ନାହିଁ ॥
ମନ ଅଥବା ଅହଙ୍କାର । ପ୍ରକୃତି ନାହିଁ ଅଛି ଆର ॥
ଯହିଁରେ ଦଗ ଦଗ ନାହିଁ । ଦେବଙ୍କ ଅଗମ୍ୟ ଅଟଇ ॥
ବିଧାତା ନ ପାରିଲା ଯାଇ । ମୋକ୍ଷକୁ ଛଡ଼ା ସେ ଅଟଇ ॥
ଆବର ଯେତେ ଅବତାର । କେହି ନ ଯାନ୍ତି ସେହି ପୁର ॥
ଯେ ଜୀବ ପରମ ବୋଲାନ୍ତି । ତାହାର ତହୁଁ ଜନ୍ମ ହୋନ୍ତି ॥
ଅର୍ଦ୍ଧେକ ମାତ୍ରା ତାର ଥାଇ । ଅଉ ସମସ୍ତେ ଜନ୍ମ ହୋଇ ॥
ଚାରିଗୋଟି ବେଦ ଜନ୍ମ ହେଲେ । ଗୃହଦୁଆରେ ସେ ରହିଲେ ॥
ଆବର ମନ ଅହଂକାର । ସମସ୍ତେ ତାତହୁଁ ବାହାର ॥
ନାଦ ଯେ ବିନ୍ଦୁ ଅଣ୍ଡ କାର । ଶରୀର ଅଛନ୍ତି ଅବୋର ॥
ଏମାନେ ତାର ତହୁଁ ଜାତ । ସେ ପ୍ରଭୁ ଜଗତର ତାତ ॥
ଆବର କହିବା ବୁଝାଇ । ଶୁଣ ତୁ ସାବଧାନ ହୋଇ ॥
କହନ୍ତି ବ୍ୟାସଙ୍କ ନନ୍ଦନ । ଶୁଣ ହେ ପରୀକ୍ଷ ରାଜନ ॥
ଏମନ୍ତ କହନ୍ତି ଶ୍ରୀହରି । ଶୁଣ ପରୀକ୍ଷ ଦଣ୍ଡଧାରୀ ॥
ମୁନି ଚରଣ ତଳେ ପଡ଼ି । ପୁଣି ପଚାରେ କର ଯୋଡ଼ି ॥
ଭଲେ ମୁନି କହ ଏବେ ମୋତେ । ଉଦ୍ଧବ ଶୁଣିଲେକ ଯେତେ ॥
ଏମନ୍ତେ ବିଚାରି ମନରେ । ପୂଜଇ ମୁନିଙ୍କ ପଦ୍ମରେ ॥
କହେ ଗୋବିନ୍ଦ ଅବଧୂତ । ନୃସିଂହ ପାଦେ ଦେଇ ଚିତ୍ତ ॥
ଲକ୍ଷ୍ମୀ ନୃସିଂହଙ୍କ ପଦ୍ମରେ । ସେବା ମୋ ରହୁ ନିରନ୍ତରେ ॥
ସୁଜନ ଜନ ପାଦେ ପଡ଼ି । ଏ ବର ମାଗେ କର ଯୋଡ଼ି ॥
ସୁଜନେ ନ ଧରିବା ଦୋଷ । ମୁଁ ତୁମ୍ଭ ଦାସ ପର ଦାସ ॥
ଏ ବ୍ରହ୍ମ ପ୍ରଚ୍ଛନ୍ନର ବାଣୀ । ରତ୍ନ ପାଦୁକା ଯା ବଖାଣି ॥
ଏହା ମୁଁ କହିବି ବା କିସ । କ୍ଷମା କରିବ ମୋର ଦୋଷ ॥
ମୁହିଁ ଯେ ବାତୁଳ ଅଟଇ । ନୃସିଂହ ଆଜ୍ଞାରେ କହଇ ॥

ସଦଗୁରୁଙ୍କ ଆଜ୍ଞା ହେଲା । ସାଧୁଙ୍କ କରୁଣା ଲଭିଲା ॥
ମାତା ପିତାଙ୍କ ଦୟା ହେଲା । ନୃସିଂହ ସ୍ୱାମୀ ଯେ କହିଲା ॥
ଜ୍ଞାନମାନଙ୍କ ସଉରଷ । ଦ୍ୱିଜ ଭଦ୍ରଙ୍କ ଉପଦେଶ ॥
ଗୁରୁ ଭଦ୍ରଙ୍କ ଜ୍ଞାନ ହୋଇ । ସାଧୁଙ୍କ ଆଜ୍ଞାରେ କହଇ ॥
ଏଥିରେ ନାହିଁ ମୋର ଦୋଷ । ସୁଜନେ ଶୁଣି ହୁଅ ତୋଷ ॥
ଅଜ୍ଞାନୀ ଦାମ୍ଭିକ ଯେ ଲୋକ । ତାକୁ ନ କହିବ ବିବେକ ॥
କହେ ଗୋବିନ୍ଦ ଅବଧୂତ । ସୁଜନେ ଶୁଣ ଦେଇ ଚିତ୍ତ ॥
ଶ୍ରୀ ବ୍ରହ୍ମପାଦୁକାର ବାଣୀ । ଶୁକ ଯା ଶ୍ରୀମୁଖେ ବଖାଣି ॥

ଇତି ଶ୍ରୀ ବ୍ରହ୍ମପାଦୁକା ଉଦ୍ଧବ ସମ୍ବାଦେ ଶୁକ ପରୀକ୍ଷ କଥନେ
ବ୍ରହ୍ମ ନିର୍ଣ୍ଣୟୋ ନାମ ସପ୍ତମୋଽଧ୍ୟାୟଃ ।



# ଅଷ୍ଟମ ଅଧ୍ୟାୟ ।

## ଶ୍ରୀ ଉଦ୍ଧବ ଉବାଚ ।

ଉଦ୍ଧବେ ଶିରେ ଦେଇ କର । ନମଇ ଗୋବିନ୍ଦ ପୟର ॥
କହେ କୋମଳ କରି ବାଣୀ । ଶୁଣ ହେ ଦେବ ଚକ୍ରପାଣି ॥
ମନ ନୟନ ଯହିଁ ନାହିଁ । କେମନ୍ତେ ଗମିବି ମୁଁ ତହିଁ ॥
ମନ କେମନ୍ତେ ରାଜା ହୋଇ । କେ ତାର ପରଜା ଅଟଇ ॥
କାହିଁ ବପଣ ରାଜା ହେଲା । କେ ତାର ପରଜା ହୋଇଲା ॥
ରଥ ତା କେମନ୍ତ ଅଟଇ । ଅଶ୍ୱ ତାହାର କିସ ହୋଇ ॥
ରଥରେ ଚକ ଯେ ଭଅଣ । କେ ତାହା କହ ନାରାୟଣ ॥
କେମନ୍ତେ ଗମନ କରଇ । କହ ହେ କମଳାର ସାଇଁ ॥
ଏ ଆଦି ପଚାରିଲି ଯେତେ । ହେ ନାଥ କହ ଦୟାଚିତ୍ତେ ॥

## ଶ୍ରୀ ଶୁକ ଉବାଚ ।

ଶୁକ କହନ୍ତି ପ୍ରୀତି ଭାବେ । ଶୁଣ ଉତ୍ତରାସୁତ ଏବେ ॥
ବ୍ରହ୍ମପାଦୁକା କହେ ସାର । ଶୁଣ ହେ ଭକତଶେଖର ॥
ଈଶ୍ୱର ପ୍ରକୃତି ହୋଇଲା । ସେହୁ ମନକୁ ଜାତ କଲା ॥

ତାହାର ପୁତ୍ର ସେ ବୋଲାଇ । ମାତାର ଗୁଣ ନ ଛାଡ଼ଇ ॥
ଅମୃତ ଏକ କଳା ଯେହ୍ନେ । ରଜା ହୋଇଲା ଏ ମେଦନୀ ॥
ଅହଂକାରରୁ କାଳ ମାଗ୍ରି । ତା ତହୁଁ ଜାତହେଲା ଏହା ॥
ସେ ନାରୀ ଅତ୍ୟନ୍ତ ସୁନ୍ଦରୀ । ଉପମା ଲକ୍ଷ ତା ନ କରି ॥
ରୂପକୁ କେତକୀ ନୁହଇ । ଚମ୍ପା ପୁଷ୍ପକୁ ସେ ନିନ୍ଦଇ ॥
ବିଜୁଳି ତହୁଁ ସେ ଚପଳ । ସୂର୍ଯ୍ୟରୁ ତେଜେ ବଳୀଅର ॥
ଚନ୍ଦ୍ରକୁ ଦେଖି ସେ ହସିଲା । ଏ କନ୍ୟା ଉଦୟେ ହୋଇଲା ॥
ମୋ ରୂପ ତ୍ରିଭୁବନେ ନାହିଁ । ଏ କନ୍ୟା ଲକ୍ଷା ଯେ ନ ପାଇ ॥
ବାଳ ଯେ ବୃଦ୍ଧ ସେ ନୁହଇ । ପୃଥ୍ୱୀକି ଦେଖି ସେ ହସଇ ॥
ନବଯୁବତି ମନୋହର । ବାରବରଷ ନୁହେ ତେର ॥
ଏମନ୍ତ ସୁନ୍ଦର ସେ ହୋଇ । ସଂସାର ମଧ୍ୟେ ଭ୍ରମୁଥାଇ ॥
ଏମନ୍ତ କେତେକାଳ ଗଲା । ବର ତାହାକୁ ନ ମିଳିଲା ॥
ଅନେକ ମନ ରଜା ପୁଣ । କରଇ ମୃଗୟା ଗମନ ॥
ରଜ ସାର୍ଥ୍ୟକୁ ଚଳକଲା । ନୟନ ଅଶ୍ୱକୁ ଯୋଚିଲା ॥
ସାରଥି ପବନ ଅଟଇ । ପ୍ରକୃତ ରପୁ ତା ବୋଲାଇ ॥
ସେ ରଥ ଅଟଇ ଚେତନା । ଯହିଁରେ ମନ ରଜା ଠଣା ॥
ସେ ରଥେ ବସିଥିଲେ ଯାଇ । କ୍ଷୁଧା ତୃଷାହିଁ ନ ଲାଗଇ ॥
କନ୍ଦର୍ପ ଯାର ତୀକ୍ଷ୍ଣ ଧନୁ । ଲକ୍ଷ ନ ଦଣ୍ଡେ ଅନୁମାନୁ ॥
ଦିବ୍ୟବେଶ ଯେ ଅଳଙ୍କାର । ଶରୀରେ ଭୂଷଣ ତାହାର ॥
ଚନ୍ଦ୍ର ମା ପ୍ରାନ୍ତ ତା ବଦନ । ଶରୀର ନନ୍ଦ ଅଛି ହେମ ॥
କଳାବସନ ପିନ୍ଧିଅଛି । ହେମ ଶରୀରକୁ ଗଞ୍ଜିଛି ॥
ଏମନ୍ତ ରୂପ ସେ ଦିଶଇ । କୋଟି ମଦନ ସମ ନୋହି ॥
ନୟନ ମାଣିକ୍ୟର ପ୍ରାୟେ । ଭ୍ରୂଲତା କାମ ଧନୁ ଶୋହେ ॥
କର୍ଣ୍ଣେ କୁଣ୍ଡଳ ସୁଶୋଭନ । କଣ୍ଠରେ ଶୋହେ ହାରମାନ ॥
ଦିବ୍ୟ ସୁନ୍ଦର ବିରାଜଇ । ନିଶାପତିକି ସେ ଦିଶଇ ॥
ଗ୍ରହ ଦିବସ ତାକୁ ନାହିଁ । ସଦା ଅଳୁଅ ସେ ଅଟଇ ॥
ଏମନ୍ତ ମନ ରଜା ବେଶ । କେ ତାହା କହିବ ବିଶେଷ ॥

ଧବଳେ ବେଶ ହୋଇକରି । ରଥେ ବସିଲା ଧନୁ ଧରି ॥
ପବନ ବହେ ଘନ ଘନ । ଚଳଇ ଏ ବାୟୁ ବିମାନ ॥
ଏମନ୍ତେ କେତେଦୂର ଗଲା । ବ୍ରହ୍ମାଣ୍ଡ ଭ୍ରମଣ ସେ କଲା ॥
ଭ୍ରମି ଅପନ୍ତେ ସେ ରାଜନ । ଦେଖିଲା କାଳମାୟା ପୁଣ ॥
ସେ କାଳମାୟା ବୁଲୁଥାଇ । କାହାର ସଙ୍ଗେ ସଙ୍ଗୀ ନୋହି ॥
ମନରାଜନ ଦେଖି କହି । ଏ ନାରୀ କାହାର ଅଟଇ ॥
ଏହିତ ତ୍ରିପୁର ସୁନ୍ଦରୀ । ଏହାକୁ ନାହିଁ ସମସରି ॥
ଏମନ୍ତ ମନେ ବିଚାରିଲା । ନାରୀ ସନ୍ନିଧିକୁ ସେ ଗଲା ॥
ମନରାଜନ ମୁଖ ଚାହିଁ । ସେ ସ୍ତ୍ରୀ ଅଳପ ହସଇ ॥
କଟାକ୍ଷ ଚାହାଣି ଚାହିଁଲା । ନୟନ ସ୍ଥିରେ ବୁଲାଇଲା ॥
ରାଜାର ଅଙ୍ଗେ ପଞ୍ଚଶର । ଭେଦିଲା ଚାହିଁଲା ମାତର ॥
କାମେ ଅଚେତ ସେ ରାଜନ । ହୋଇ ପଡ଼ିଲା ମୋହମାନ ॥
ଚେତନା ପାଇ ସେ ରାଜନ । ଉଠି ବସିଲା ତତକ୍ଷଣ ॥
ପୁଣି ନାରୀକ ଚାହିଁ ଧୀରେ । ବଚନ ବୋଇଲା ଗମ୍ଭୀରେ ॥
ଶୁଣ ଯୁବତି ମୋ ବଚନ । କାହାର କୁଳେ ତୋର ଜନ୍ମ ॥
କାହାର ପତ୍ନୀ ତୁ ବୋଲାଉ । କିପାଇଁ ଏକା ଭ୍ରମୁଥାଉ ॥
କହ ଶୁଣିବି ମୁହିଁ ଧୀରେ । କହ ବଚନ ତୁ ମଧୁରେ ॥
ତୋତେ ଦେଖିଣ ମୋର ମନ । କନ୍ଦର୍ପେ ହେଉଛି ଦହନ ॥
ଏମନ୍ତ ଶୁଣି ତାର ବାଣୀ । କହେ ଯୁବତି ଶିରୋମଣି ॥
ଯାହା ପୁଚ୍ଛିଲ ହେ ରାଜନ । ମୋହର ଜନ୍ମର ବିଧାନ ॥
ଆଦ ଈଶ୍ବର ମୋର ପିତା । ଆଦଶକ୍ତି ଯେ ମୋର ମାତା ॥
ମୁହିଁତ ଅଯୋନି ସମ୍ଭୂତା । ପାଳନେ ଏନ୍ତୁ ପିତା ମାତା ॥
ମୁହିଁ ଯେ ଏକା ବୁଲୁଥାଇ । କାହାର ସଙ୍ଗେ ସଙ୍ଗ ନାହିଁ ॥
ମୋ ତୁଲ୍ୟ ବରକେ ନୋହିଲେ । ବ୍ରହ୍ମା ଶଙ୍କର ଭଜିଗଲେ ॥
ମୋହର ବଚନ ଶୁଣିଣ । ଗଲେ ସେ ଯେ ଯାହା ଭୁବନ ॥
ମୁହିଁ ସୁନ୍ଦରୀ ତନପୁରେ । ବର ମୋ ନଦିଶେ ନେତ୍ରରେ ॥
ନାମ ମୋ କାଳମାୟା ହୋଇ । ଶୁଣ ରାଜନ ମନଦେଇ ॥

## ରାଜୋବାଚ ।

ରାଜା ଅନନ୍ଦ ତାହା ଶୁଣି । ବୋଲଇ ଶୁଣରେ ତରୁଣୀ ॥
ମୁହିଁ ତୋ ପାଶେ ସେବଥିବ । ଯାହା ବୋଲିବୁ ତା କରିବ ॥
ଶୁଣିଣ କାଳମାୟା ହସି । ରାଜାକୁ ବୋଇଲା ଆଶ୍ୱାସି ॥

## କାଳମାୟା ଉବାଚ ।

ମୋତେ ତୁ ଦେଖି ହୋ ରାଜନ । ମଦନେ ହେଲୁ ମୋହମାନ ॥
ମୋ ପରେ ମନ ତୁ ବଳାଉ । ସହ୍ଧ କ ପାରିବୁ ମୋ ଦାଉ ॥
ଯେବେ କରିବୁ ମୋ ବଚନ । ସତ୍ୟ ତୁ କର ହୋ ରାଜନ ॥

## ରାଜୋବାଚ ।

ଏମନ୍ତ ନାରୀ ବାଣୀ ଶୁଣି । ମନେ ହର୍ଷରେ ନୃପମଣି ॥
କାମରେ ଅରତ ହୋଇଲା । ତକ୍ଷଣେ ସତ୍ୟ ଆରମ୍ଭିଲା ॥
ସତ୍ୟ ସେ କଲା ତାର ପାଶ । ଶୁଣି ସୁନ୍ଦରୀ ହସ ହସ ॥
ବୋଲଇ ରାଜା ମୁଖ ଚାହିଁ । ନଷ୍ଟେ ହୋଇଲୁ ତୁହି ବାଇ ॥
ମୁହିଁ ଜଗତ ନାଶକାରୀ । ମତେ ଛୁଇଁଲେ ପ୍ରାଣୀ ମରି ॥
ତୁ ରାଜା ନ ଜାଣୁ ବୃତ୍ତାନ୍ତ । ଏବେ ତ କଲୁ ତୁହି ସତ୍ୟ ॥
ମୋର ବଚନ ଏବେ ଶୁଣ । କହିବ ପ୍ରମାଣ କରଣ ॥
ମୋତେ ତୁ କାନ୍ଧେ ବହିଥିବୁ । ମୋହର ବଚନ କରିବୁ ॥
ଏ କଥା ଯେ ଜନ କରିବ । ମୋହର ପ୍ରିୟ ସେହୁ ହେବ ॥
ଯାହା ମୁଁ କଳ୍ପିବ ମନରେ । ତାହା ଆଣିବ ତତପରେ ।୮୩।
ମୋହର ପାଦେ ଖଟୁଥିବ । ଭୃତ୍ୟର ପରାୟେ ରହିବ ॥
ଏରୂପେ ଯେ ସେବା କରିବ । ମୋ ସଙ୍ଗେ ତାର ପ୍ରୀତି ହେବ ॥
ଏହା ତୁ କରିଲେ ରାଜନ । ମୋହର ପତି ହେବୁ ପୁଣ ॥
ରାଜନ ସନମତ କଲା । ତକ୍ଷଣେ ରଥରୁ ଉଠିଲା ॥
କାଳମାୟାକୁ ଧରେ ଯାଇ । ସେ ନାରୀ ଦେଖିଣ ହସଇ ॥
କାନ୍ଧରେ ବହି ସେ ଆଣିଲା । ତକ୍ଷଣେ ରଥରେ ଚଢ଼ିଲା ॥
ବାହୁଡ଼ି ଆସେ ସେ ରାଜନ । ନଗରେ ହୋଇଲା ବହନ ॥

କହନ୍ତି ବ୍ୟାସଙ୍କ ସନ୍ତତ । ଶୁଣ ହେ ଅର୍ଜୁନର ନାତି ॥
ରତ୍ନପାଦୁକା କହେ ଧୀରେ । ଶୁଣ ଉଦ୍ଧବ ମନସ୍ଥିରେ ॥
ସେ କାଳମାୟାକୁ ଆଣିଣ । ନବର ଭିଆଇ ରାଜନ ॥
ଅଠଷ୍ଟି ଖମ୍ଭ ସେ ପୋତିଲା । ଶେଣି ଗୋଟିଏ ପକାଇଲା ॥
ଛବଶ ଚୁଅ ଯେ ଖଞ୍ଜିଲା । ବତିଶ ବତା ତହିଁ କଲା ॥
ଷୋଳବଖର ସେ ଭିଆଣ । କଲା ସେ ନବଦ୍ୱାର ପୁଣ ॥
ଶିର ତହିଁରେ କର ଗଣ୍ଠି । ରକତ ମାଂସ ମେଦ ଛଟି ॥
ଚର୍ମ ଯେ କେଶ ନଖ ଯେତେ । ଏ ମାନ ଛଇଲା ତୁରିତେ ॥
ଦୁଇ ଧାରଣା ସେନ୍ଥ କଲା । ଚଳନ୍ତି ଘର ବୋଲାଇଲା ॥
ଘରକୁ ଅଚ୍ଛାଦିବା ପାଇଁ । ଦୁଇଟି ପ୍ରାଣୀ ସେ ଭିଆଇ ॥
ଏମନ୍ତ ନବର ସେ କଲା । ଗମ୍ଭିସ୍ତ ତହିଁରେ ସ୍ଥାପିଲା ॥
ନବଦ୍ୱାରର ପରେ ଯାଇଁ । ଗମ୍ଭିସ୍ତ କଲା ତହିଁ ନେଇ ॥
ସେ ସ୍ଥାନେ କାଳମାୟା ଥାଇ । ଅଟଗ ସେ ଦ୍ୱାରକୁ ଜଗଇ ॥
ତହିଁର ଉପରେ ମଣ୍ଡପ । ଯହିଁରେ ଚଇତନ୍ୟ ଗୋପ୍ୟ ॥
ରାଜା ହୋଇଲା ସେବାକାଶ । ମୁକତ ମଣ୍ଡପ ଅଟୋର ॥
ପଞ୍ଚାଶ ପାଇକ ସେ କଲା । ଦଶ କରଣ ଭିଆଇଲା ॥
ଦ୍ୱାଦଶ କଟୁଆଳ ହୋଇ । ଗୈବ ଯେ ଏକାଦଶ କହି ॥
ସରଜା ପଚଶ ହୁଅଇ । ପ୍ରଧାନ ତିନିଟି କରଇ ॥
ଛତ୍ର ଯେ ଦଣ୍ଡ ଆସି କଲା । ଏମନ୍ତେ ସଂସାର ସୃଜିଲା ॥
ଆବର ପାତ୍ରପାଣ୍ଡି ହୋଇ । ମୁକତ ମଣ୍ଡପେ ବସାଇ ॥
ସେଠାରେ ବସି ଥାଇ ରାଜା । କରଇ ସେଠା ବୁଝା ସୁଝା ॥
ଯେ ହାନି ଲାଭ କରୁଥାଇ । ଦୋଷ ଦେଖିଣ ସେ ଦଣ୍ଡଇ ॥
ସରଜା ଗୁହାରି କରନ୍ତି । ପାତ୍ରମାନେ ଯେ ଜଣାଅନ୍ତି ॥
ତାହା ବୁଝଇ ସେ ରାଜନ । ଯାହାର ଯେମନ୍ତ ଭିଆଣ ॥
ପତ୍ର ଧରଇ ଲେଖିକର । ଦଶକରଣ ଡାକ କର ॥
ଆବର କୋଠ ଯେ କରଣ । ତା ନାମ କ୍ରୋଧ ଅଟେ ପୁଣ ॥
ଅହଙ୍କାରକୁ ସେ ଖଟିଲା । ସମସ୍ତ ଭଲ ମନ୍ଦ କହି ॥

ଏମନ୍ତ ହୋଇ ମନରଜା । ପାଳଇ ପାଇକ ପରଜା ॥
ମୁକ୍ତ ମଣ୍ଡପେ ସେହୁ ଥାଇ । ଯାହାକୁ ଯେମନ୍ତ ଦେଖଇ ॥
ସେହୁ ପ୍ରବନ୍ଧ ଯାରେ ହୋଇ । ପରମ ଗତକୁ ଲଭଇ ॥
ଯାହାକୁ ଅପ୍ରସନ୍ନ ହୋଇ । ହେତୁ ଯେ ନରକେ ପଡ଼ଇ ॥
ଯାକୁ ଅଳ୍ପକେ ଦଏ ଗୃହ୍ନି । ସେ ସ୍ୱର୍ଗ ଭୋଗକୁ ଲଭଇ ॥
କାହାକୁ କରେ ଅଧୋଗତ । ଏକା ସେ ମନ ନରପତ ॥
ମନଟି ନାରାୟଣ ହୋଇ । ସକଳ ହୃଦେ ବସିଥାଇ ॥
ତୁ ଅବା ବୋଲିବୁ ଏମନ୍ତ । ଏ ଯେବେ ନାରାୟଣ ସତ୍ୟ ॥
କପାଇଁ କାମେ ବଶ ହେଲା । ସେ ନାରୀଲାଗି ବନ୍ଧ ଗଲା ॥
ସେ କଥା କହିବା ବୁଝାଇ । ଶୁଣ ତୁ ସାବଧାନ ହୋଇ ॥
ମନର ଦେହେ ନାରାୟଣ । ରହିଲେ ପରମ ରୂପେଣ ॥
ଭକତ ବଶେ ବସିଥାଇ । ମନର ଅସ୍ତୃତ୍ୱ ନୁହଇ ॥
ଯେସନେ ସମୁଦ୍ରେ ବୋଇତ । ସାଧବ ଚଳଇ ଭୁରତ ॥
ବୋଇତ ସମୁଦ୍ରର ସତ୍ୟ । ଏ କଥା ନ ଜାଣେ ସାଧୁତ ॥
ବୋଇତ ଭିତରେ ସେ ଥାଇ । ଏ ଦାନ ଲାଭ ନ ଜାଣଇ ॥
ବୋଇତ ଲହଡ଼ି ଘାତରେ । ପାଣିରେ ବୁଡ଼ଇ ସନ୍ଧରେ ॥
ଯେହ୍ନେ ସାଧବ ତହିଁ ନାଶ । ଧନ ଲୋଭରେ ଗଲା ଧ୍ୱଂସ ॥
ସେହି ପ୍ରକାରେ ମନ ଦେହେ । ସେ ପ୍ରଭୁ ଅସ୍ତୃତ୍ୱ ନ ହୁଏ ॥
ବୋଇତ ମନଟିକ କହ । ସାଗର କାଳମାୟା ହୋଇ ॥
ସେ ତାର ସନ୍ଧରେ ବୁଡ଼ିଲା । ତାହାର ଅସ୍ତୃତ୍ୱ ନୋହିଲା ॥
ଏମନ୍ତ ହୋଇ ମନୁ ରଜା । ମୁକତ ମଣ୍ଡପେ ତରଯା ॥
ଅଇଲା ମୁକ୍ତ ମଣ୍ଡପକୁ । ଦେଖିଲା ସେ କାଳମାୟାକୁ ॥
ତାହାର ବଦନ ଗୃହ୍ନିଁଲା । ତକ୍ଷଣେ କାମେ ବଶ ହେଲା ॥
ରଜା ମଣୋହି ପାସୋରଇ । କାଳମାୟାର ସଙ୍ଗେ ଥାଇ ॥
ସେ ଯାହା ମନାସେ ମନରେ । ତାହା ଦଅଇ ତତପରେ ॥
ଧେନୁକୁ ବତ୍ସା ଯେହ୍ନେ ଥାଇ । ତେମନ୍ତ ତାର ବଶ ହୋଇ ॥
ରତ୍ନପାଦୁକା କହେ ଯେତେ । ଶୁଣେ ରଜନ ଏକଚିତ୍ତେ ॥

ଉଦ୍ଧବ ଶୁଣି ତୋଷମନ । ନମିଲ୍ଲ ଗୋବିନ୍ଦ ଚରଣ ॥
ପରୀକ୍ଷେ ଶୁକମୁନି କହେ । ସୁଜନେ ଏଣେ କର ଲକ୍ଷ୍ୟେ ॥
ମୋ ଛାର ମୂଢ଼ ହୀନଜନ । ମୁ କାହିଁ ଜାଣିବ ଏମାନ ॥
ନୃସିଂହ ଅଙ୍କରେ କହଇ । ଏ କଥା ପ୍ରମାଣ ଅଟଇ ॥
କହେ ଗୋବିନ୍ଦ ଦାସ ହୀନ । ନୃସିଂହ ପାଦେ ଦେଇ ମନ ॥
ସୁଜନ ଜନଙ୍କ ପଛରେ । ସେବା ମୋ ରହୁ ନିରନ୍ତରେ ॥
ନୃସିଂହ ପଦ ଯେ କମଳ । ମୋ ମନ ହୋଇଲା ଭୃସଳ ॥
ସେ ରସ ଚୁମ୍ବିବାକୁ ମନ । ଅଛି ହେ ଧନ୍ୟ ସାଧୁଜନ ॥
କହେ ଗୋବିନ୍ଦ ଅବଧୂତ । ଗୁରୁଙ୍କ ପାଦେ ଦେଇ ଚିତ୍ତ ॥
ଏହୁ ଶ୍ରୀ ଭାଗବତ ରସ । ସୁଜନେ ଶ୍ରବଣ ପୀୟୂଷ ॥

ଇତି ଶ୍ରୀ ରହୃପାଦୁକା ଉଦ୍ଧବ ସମ୍ବାଦେ ଶୁକ ପରୀକ୍ଷ କଥନେ
ମନୁରାଜା ରାଜ୍ୟକରଣେ ନାମ ଅଷ୍ଟମୋ ଽଧ୍ୟାୟଃ ।



# ନବମ ଅଧ୍ୟାୟ ।

## ଉଦ୍ଧବ ଉବାଚ ।

ଉଦ୍ଧବ ଶିରେ ଦେଇ କର । ବୋଲଇ ଶୁଣ ଦାମୋଦର ॥
ମନତ ରାଜନ ହୋଇଲା । କିରୂପେ ଗଡ଼ ଭିଆଇଲା ॥
କେତେକ ଲୋକ ଅଛି ତାର । କହ ହେ କମଳାର ବର ॥
କାହାକୁ ସେନାପତି କଲା । କେ କେଉଁ ଗଡ଼ରେ ରହିଲା ॥
ଏ କଥା କହ ନାଥ ମୋତେ । ନମଇ ତୋର ପାଦଗତେ ॥
ଏମନ୍ତ ଶୁଣି ତାର ବାଣୀ । କହନ୍ତି ପ୍ରଭୁ ପଦ୍ମପାଣି ॥
ଶୁଣ ଭକତ ଦେଇ ମନ । କହିବା ଗଡ଼ର ଲକ୍ଷଣ ॥
ମନୁରାଜନ ରାଜ୍ୟ କଲା । ଯେମନ୍ତେ ଗଡ଼ ଭିଆଇଲା ॥
ସେ କଥା ଶୁଣ ମନ ଦେଇ । କହିବା ସମସ୍ତ ବୁଝାଇ ॥
ମନରାଜନ ଏକଦିନେ । ବସି ବିଚାର କଲା ମନେ ॥

ଯେଣୁ ସେ ନାସପୁଣ ହୋଇ । ତେଣୁ ସେ ଗଡ଼କୁ ସର୍ଜଇ ॥
ନଗ୍ରକୁ ଧାରଣା ନିମନ୍ତେ । ଗଡ଼ ସେ ଭ୍ୟାଇଲା ଭୂବତେ ॥
ଯେକାଳେ ନିଶବଦ ହେଲା । ସେ ସ୍ଥାନୁ ଧ୍ୱନିଏ ଝୁରିଲା ॥
ସେ ଧ୍ୱନି ପବନଟି କହି । ସେ ବ୍ରହ୍ମଘରୁ ଜାତ ହୋଇ ॥
ବ୍ରହ୍ମର ସଙ୍ଗେ ସେହୁ ଥିଲା । ଦ୍ୱାର ହୁଅନ୍ତେ ବାହାରିଲା ॥
ପବନ ପଶୁଛ ଅଟଇ । ଆସିଲା ଅଧୋମୁଖ ହୋଇ ॥
ଧୀରେ ଆସନ୍ତେ ସେ ପବନ । କରଇ ହୁଁକାର ଗର୍ଜ୍ଜନ ॥
ପବନ ବଳେ ସେ ବ୍ରହ୍ମାଣ୍ଡ । ମେଲା ହୋଇଲା ସପ୍ତଖଣ୍ଡ ॥
ମେଲା ଦେଖିଣ ସେ ପବନ । ଖେପଇ ଅଣଗୃଷ ପୁଣ ॥
ଖେପି ଆସନ୍ତେ ବ୍ରହ୍ମାଣ୍ଡକୁ । ମେଲା ଯେ ଦଶିଲା ତାହାକୁ ॥
ଚଉଦ ପୁରକୁ ଗମିଲା । ଯହୁଁ ଅକୃତ୍ତ ଯେ ଦେଖିଇ ॥
ଆସନ୍ତେ ପଶୁଣ ପବନ । ଦେଖି ଧାଇଁଲେ ତତକ୍ଷଣ ॥
ସେ ଦ୍ୱାର କବାଟ ଫେଡ଼ିଲା । ପବନ ତହୁଁରେ ରହିଲା ॥
ମନକୁ ଦେଖି ଜାତ କଲା । ଏମନ୍ତ ବଚନ ବୋଇଲା ॥
ଏହୁ ପବନ ଯେଣୁ ଭୂହି । ଗଡ଼ ସର୍ଜନା କର ଯାଇଁ ॥
ମନ ତା ବଚନ ଶୁଣିଣ । ଗଡ଼ ସେ ଭିଆଇଲା ପୁଣ ॥
ପ୍ରଥମେ ସେହୁ ଦ୍ୱାରଠାରେ । ଗଡ଼ ସେ ବନ୍ଧିଲା ଶୂନ୍ୟରେ ॥
ତୁଇ ପାଖୁଡ଼ା ତହିଁକଲା । ତହିଁ ପବନ ବନ୍ଧକଲା ॥
ପୁଣି ସେ ତଳକୁ ଆସିଲା । ଷୋଳ ପାଖୁଡ଼ା ଗଡ଼କଲା ॥
ପୁଣି ତଳକୁ ଗଡ଼ କଲା । ଦଶ ପାଖୁଡାରେ ଛନ୍ଦିଲା ॥
ସେ ଗଡ଼ ନିବନ୍ଧିଲା ଅଟେ । ତହିଁରେ ଚନ୍ଦ୍ର ସୂର୍ଯ୍ୟ ଘାଟେ ॥
ପୁଣିହିଁ ତଳକୁ ଖସିଲା । ତହିଁ ଗଡ଼େକ ଭିଆଇଲା ॥
ଗଡ଼ ପାଖୁଡ଼ା ତହିଁ କଲା । ଏମନ୍ତେ ପାଞ୍ଚ ଗଡ଼ ହେଲା ॥
ପୁନଶ୍ଚ ବଶୁର ମନରେ । ଦ୍ୱାରେକ କଲା ସେହୁଠାରେ ॥
ପୁଣି ବଶୁର ସେ ମନକୁ । ଗଡ଼େକ ବାନ୍ଧିଲା ତଳକୁ ॥
ଚୁଇ ପାଖୁଡ଼ା ତାକୁ କଲା । ନିବନ୍ଧେ ବନ୍ଧକୁ ବାନ୍ଧିଲା ॥
କହନ୍ତି ଅଚ୍ୟୁ ନାସପୁଣ । ଶୁଣିଲୁ ଗଡର ଲକ୍ଷଣ ॥

ଉଦ୍ଧବ ବୋଇଲେ ହେ ହରି । କହିଲ ଗଡ଼କୁ ବିସ୍ତର ॥
ସେହ୍ନତ ଗଡ଼ ଭିଆଇଲ । କାହିଁରେ କାହାକୁ ରଖିଲ ॥
ଏ କଥା ଶୁଣିବାକୁ ମନ । କହ ହେ ଶ୍ରୀପୁରୁଷୋତ୍ତମ ॥
ଏମନ୍ତ ଶୁଣି ତାରବାଣୀ । ରତ୍ନପାଦୁକା କହେ ପୁଣି ॥
ହେ ତତ୍ତ୍ୱଜ୍ଞେୟବାନ ଶୁଣ । କହିବା ତହିଁର କାରଣ ॥
ମନସ୍ୱଜନ ଗଡ଼ କଲି । ଯାହାକୁ ଯେ ସ୍ଥାନେ ରଖିଲି ॥
ଏ କଥା କହିବା ବୁଝାଇ । ଶୁଣ ତୁ ସାବଧାନ ହୋଇ ॥
ଏମନ୍ତେ ଛଡ଼ଦଣ୍ଡ ଗଲା । ପୁଣି ସେ ଊର୍ଦ୍ଧ୍ୱକୁ ଗମେଲା ॥
ପବନ ବାହୁଡ଼ିଲା ଯହୁଁ । ସେ ମନ ଉଡ଼ିଗଲା ତହୁଁ ॥
ତା ଘାତ ସହି ନ ପାରିଲା । ପ୍ରଥମ ଗଡ଼କୁ ସେ ଗଲା ॥
କହିଲେ ଦେଖା ଅଗେ ଯାଇ । ଶୁଣି ଧାଇଁଲା ମହାମାଈ ॥
ପବନ ନେଉଛି ଅସନ୍ତେ । କବାଟ ଫେଡ଼ିଲା ତୁରିତେ ॥
ମରୁତ ଗରଜନ କଲା । ବଜ୍ର କବାଟ ଫେଡ଼ିଦେଲା ॥
ଯହୁଁ ସେ କବାଟ ନ ପାଇଲା । ସେ ଦ୍ୱାରଠାରୁ ନେଉଛିଲା ॥
ପୁଣି ସେ ତଳକୁ ଅସନ୍ତେ । ମନେ ବିସ୍ମର କଲା ଚରେ ॥
ଏହି ସମୟେ ଯେ ପବନ । ନିବଳ ହୋଇଅଛି ଜାଣ ॥
ପଛରୁ ଜଣେ ଜଣେ ଧରି । ରଖିଛି ଗଡ ମୁଦ୍ଦକରି ॥
ଏମନ୍ତ ବିସ୍ମର ଧାଇଁଲା । ପବନ ସେଠାରେ ଧଇଲା ॥
ବଳେ ବାନ୍ଧିଣ ଘେନିଗଲା । ଗଡ଼ର ଭିତରେ ରଖିଲା ॥
ତହିଁରେ ବାନ୍ଧି କରିରଖି । ପୁଣି ଚଳିଲା ତା ଉପେକ୍ଷି ॥
ଧଇଲା ମନବେଗେ ଯାଇ । ଦ୍ୱାଦଶ ପବନ ବାନ୍ଧଇ ॥
ଦ୍ୱିତୀୟ ଗଡ଼ରେ ରଖିଲା । ନିବନ୍ଧ କରିଣ ବାନ୍ଧିଲା ॥
ପୁଣି ଧାଇଁଲା ସେ ସ୍ୱଜନ । ଧଇଲା ଦଶଇ ପବନ ॥
ତାହାକୁ ବଳେ ବାନ୍ଧିନେଲା । ଚତୁର୍ଥ ଗଡ଼ରେ ରଖିଲା ॥
ପୁଣି ଧାଇଁଲା ଖରକରି । ଛଅ ପବନ ବେଗେଧରି ॥
ପଞ୍ଚମ ଗଡ଼ରେ ରଖିଲା । ତହିଁରେ ଜଣେ ବସ୍ତାମେଲା ॥
ପବନ ଗମିଲାକ ଖରେ । ନ ଦେଖି ରହିଲା ସେଠାରେ ॥

ପବନ କେତେ ଦୂରଗଲା । ସଙ୍ଗ ନ ଦେଖି ନେଉଟିଲା ॥
ବାହୁଡ଼ି ଅସନ୍ତେ ସେ ବାଇ । ବଳେ ଧଇଲା ତହିଁ ଯାଇ ॥
ଯହିଁ ସେ ଶାଖା ନ ପାଇଲା । ତାହାର ବଳ ଭଗ୍ନ ହେଲା ॥
ଛଡଗଡରେ ନେଇ ରଖି । ପୁଣି ଚଳଲା ତା ଉପେକ୍ଷି ॥
ଦେହୀର ପାଶେ ଘର କଲା । ତାହା ଅଶ୍ରିତେ ସେ ରହିଲା ॥
ଏମନ୍ତ ଶୁଣି ଖାରମଣି । ଶିରେ ଯୋଡ଼ିଲା ବେନପାଣି ॥

## ଉଦ୍ଧବ ଉବାଚ ।

ଉଦ୍ଧବ ବୋଲେ ଶୁଣ ହରି । ଗଡତ କହିଲ ବିସ୍ତାରି ॥
ସେ ଗଡ ମନ ଭୁଅଇଲା । ତାହାକୁ ଗଡ଼ରେ ରଖିଲା ॥
ସେ ଗଡ଼ କାହାକୁ ଜଗାଇଁ । ଗଡ଼ ନାୟକ କେ ବୋଲାଇ ॥
ଏ କଥା ଫେଡ଼ି କହ ମୋତେ । ଭେଜ୍ଞ ନାଥ ପୁଛିଲି ଯା ତୋତେ ॥

## ଭଗବାନୁବାଚ ।

ଏମନ୍ତ ତାର ବାଣୀ ଶୁଣି । ହସି କହନ୍ତି ଚକ୍ରପାଣି ॥
ଶୁଣ ଉଦ୍ଧବ ମନଦେଇ । କହୁଛି ସେ କଥା ବୁଝାଇ ॥
ମନୁସ୍ୱଜନ ଗଡ଼ ଗଲା । ତହିଁ ନାଏକ ଭୁଅଇଲା ॥
ପ୍ରଥମ ଗଡ଼ଟି ଶୂନ୍ୟରେ । ବାନ୍ଧି ଅଛଇ ସେ ନିର୍ଭରେ ॥
ହଥ ଯେ ଯାତ ତହିଁ ଅଛି । ସେଠାରେ ପବନ ରହିଛି ॥
ନାଏକ ତହିଁରେ ଭୁଅଇ । ତା ନାମ ନିରଞ୍ଜନ ହୋଇ ॥
ନିରଞ୍ଜନକୁ ଯେ ଗଡ଼ରେ । ଆବୋର ରହିଲା ସେଠାରେ ॥
ଭିତର ଦ୍ୱାରକୁ ଯେ ବାଟ । ଯହିଁରେ ମନୁସ୍ୱଏ ଭେଟ ॥
ଆବର ଗଡ଼ କଥା ଶୁଣ । କହିବା ନିର୍ଣ୍ଣିସ୍ଥ କରଣ ॥
ତହିଁ ତଳରେ ଯେଉଁ ଗଡ଼ । ତହିଁ ନାୟକ ଯୋଗାରୂଢ଼ ॥
ଷୋଳ ପବନ ଯେ ତହିଁରେ । କହିବା ଶୁଣ ମନସ୍ଥିରେ ॥
ଅଥରୁ ଅଙ୍ଗଯାଏ ହୋଇ । ଏମନ୍ତେ ପାଇକ ବସଇ ॥
ଆବର ନାମ ଶୁଣ ତୁହି । କହିବା ସମସ୍ତ ବୁଝାଇ ॥
ଅଷ୍ଟ ଯେ ପବନ ପ୍ରବରେ । ବସିଣ ଅଛି ଅ ଅଷରେ ॥

ଅଙ୍ଗ ଯେ ପବନ ଦକ୍ଷିଣ । ଅଥରେ ବସିଛି ଅପଣ ॥
ତାର ଦକ୍ଷିଣେ ଯେ ପବନ । ଇକାର ହୋଇଛି ଭୂଅଣ ॥
ତାହା ଦକ୍ଷିଣେ ସେ ହୋଇଲା । ଇଅର ପବନ ରହିଲା ॥
ତାର ପଶ୍ଚିମେ ଏବେ ଶୁଣ । ପବନ ଓଁକାର ଭୂଅଣ ॥
ତାହାର ବାମ ପାରୁଶରେ । ଓଙ୍କାର ପବନ ସେଠାରେ ॥
ତାହାର ଦକ୍ଷିଣେ ସେ ହୋଇ । ଋକାର ପବନ ବସଇ ॥
ତାହାର ଦକ୍ଷିଣ ହୋଇଲା । ପବନ ରୂପେ ସେ ବସିଲା ॥
ପୂର୍ବ ଯେ ଦକ୍ଷିଣ ଏମନ୍ତ । ଶୁଣ ହେ ପଶ୍ଚିମ ବୃତ୍ତାନ୍ତ ॥
ପଶ୍ଚିମେ ପବନ ରହିଲା । ଢକାର ବୋଲି ବୋଲାଇଲା ॥
ତାହାର ଦକ୍ଷିଣେ ପବନ । ଲୋପ୍ୟ ବୋଲିଣ ତାହାଜାଣ ॥
ତା ବାମେ ଯେବଣ ପବନ । ଏବେ ତା କହିଦେବା ଶୁଣ ॥
ତାହାର ଦକ୍ଷିଣ ଭାଗରେ । ଅଲ ବୋଲିଣ ରହେ ଧୀରେ ॥
ଏମନ୍ତେ ପଶ୍ଚିମରୁ ଗଲା । ଶୁଣ ଉତ୍ତରଦଗ ଲୀଳା ॥
ପବନଟି ଓ ବୋଲାଇଲା । ଉତ୍ତର ଦଗରେ ରହିଲା ॥
ତାହାର ଦକ୍ଷିଣ ପବନ । ଓଁକାର ବୋଲି ତାହା ଜାଣ ॥
ତାରଦକ୍ଷିଣେ ଅଦ୍ଧ ହେଲା । ପବନ ନାମ ବୋଲାଇଲା ॥
ଅଙ୍ଗ ଯେ ତା ବାମଭାଗରେ । ପବନ ଧର ରହେ ଧୀରେ ॥
ଏମନ୍ତେ ଅଠର ପବନ । କହିଲୁଁ ମନେ ଏହା ଘେନ ॥
ଏମନ୍ତେ କହନ୍ତେ ଅଚ୍ୟୁତ । ଶୁଣି ପରୀକ୍ଷ କୃତକୃତ୍ୟ ॥
ପରୀକ୍ଷେ ଶୁକମୁନି କହେ । ପୁଚ୍ଛନେ ଏଣେ କର ଲକ୍ଷ୍ୟ ॥
କହେ ଗୋବନ୍ଦ ଅବଧୂତ । ନୃସିଂହ ପାଦେ ଦେଇ ଚିତ୍ତ ॥
ଯେ ପ୍ରଭୁ ଭକତ ହିତରେ । ସ୍ତମ୍ଭ ମଧ୍ୟରୁ ଅବତରେ ॥
ମୋ ମନ ରହୁ ତାଙ୍କ ଭାବେ । ଅଜ୍ଞାହେ ଦଅ ସାଧୁ ଏବେ ॥
ଶ୍ରୀରତ୍ନପାଦୁକାର ବାଣୀ । ଶୁକ ଯା ଶ୍ରୀମୁଖରେ ଭଣି ॥

ଇତି ଶ୍ରୀ ରତ୍ନପାଦୁକା ଉଦ୍ଧବସମ୍ବାଦେ ମନୁରାଜା ଗଡ଼ ବନ୍ଧନେ ନାମ ନବମୋଽଧ୍ୟାୟଃ ।



# ଦଶମ ଅଧ୍ୟାୟ ।

## ଉଦ୍ଧବ ଉବାଚ ।

ଉଦ୍ଧବ ପୁଚ୍ଛା କରେ ପୁଣି । କହ ହେ ପ୍ରଭୁ ଚକ୍ରପାଣି ॥
ଆଜ ଯେ ସ୍ୱରଗଡ଼ କହେ । ତହିଁ ନାୟକ କେ ବୋଲାଏ ॥
କେବଣ ପାଇକ ସେଠାରେ । କାହାକୁ ଧରେ ସେ ଗଡ଼ରେ ॥
ମୁଁ ଯେବେ ଦାସ ତୋ ଅଟଇ । କହିବା ଏହାକୁ ବୁଝାଇ ॥
ଗଡ଼ର ନାୟକମାନଙ୍କୁ । ଧରି କହନ୍ତୁ ଭକତକୁ ॥
ଯେ ଗଡ଼ ନାୟକଙ୍କ ଯେହୁ । ତାହା ମୁଁ କହୁଛି ବୁଝାଇ ॥
ଗଡ଼ ନାୟକ ନାରାୟଣ । ରହିଲେ ଗଡ଼ ଅବୋରଣ ॥
ସେ ଗଡ଼ ଯାଉଳି ହୋଇଲା । ତୋତେ କହିବା ତହିଁ ଲୀଳା ॥
ପରାଣ ଗଡ଼ ପୂର୍ବଭାଗେ । ରହେ ଉଁକାର ବାହୁଲ୍ୟଗେ ॥
ଦକ୍ଷିଣେ ଉଁକାର ପବନ । ଛକାର ବାହୁରେ ଯେସନ ॥
ଜକାର ପବନ ପଶ୍ଚିମେ । ଝଁକାର ନଇରୃତ କୋଣେ ॥
ଉତ୍ତରେ ନିରେପ ପବନ । ଐଶାନେ ଝଙ୍କାର ବୋଲଣ ॥
ଅଗ୍ନି କୋଣରେ ଯେ ପବନ । ରହିଲା କ୍ଷରରେ ଜାଣ ॥
ଏ ଆଠ ପାଇକ ରହିଲେ । ତଳେ ସ୍ତୁଜ ସେ କାଟିଲେ ॥
ତହିଁରେ କମଳ ପବନ । ରହିଲା ପ୍ରଥମ ଦଳେଣ ॥
ଖାଖର ପବନ ଙଅରେ । ରହିଲା ପଶ୍ଚିମ ଧଗରେ ॥
ଗହର ଗମ୍ଭୀର ପବନ । ରହେ ଉତ୍ତର ଦଗେ ଜାଣ ॥
ଘାଙ୍ଗର ଦକ୍ଷିଣେ ରହିଲା । ଏମନ୍ତେ ଗଡ଼ ଆରମ୍ଭିଲା ॥
ଆବର ତଳ ଗଡ଼ ଯହିଁ । ଗଡ଼ ନାୟକ ବ୍ରହ୍ମ ହୋଇ ॥
ସଙ୍ଗତେ ଯେତେଲୋକ ଥାଇ । କହିବା ତାନାମ ବୁଝାଇ ॥
ପ୍ରଥମେ ଡଅ ଯେ ରହଇ । ଡ଼ଙ୍ଗର ପବନ ବୋଲାଇ ॥
ଢଅ ଯେ ତା ଦକ୍ଷିଣେ ବସେ । ଟାଙ୍କୁଣି ପବନ ତା ପାଶେ ॥
ତାହାର ପାଖେ ଅଣ ହୋଇ । ତହିଁରେ ପବନ ବସଇ ॥
ତଅ ଯେ ତା ପାଖେ ରହିଲା । ଅଳ୍ପ ତା ବାୟୁ ବୋଲାଇଲା ॥

ଥଅ ଯେ ତା ପାଖେ ରହିଛି । ସ୍ଥିବର ପବନ ବୋଲାଇ ॥
ଦଅରେ ପବନ ଦ୍ରୁମର । ରହିଛି ଥଅର ପାଖର ॥
ଧଅର ଧଇର୍ଯ୍ୟ ପବନ । ରହିଛି ତାର ପାଶେ ପୁଣ ॥
ନଅ ଯେ ତା ପାଖେ ରହିଲା । ନର୍ତ୍ତିସ୍ଥ ପବନ ହୋଇଲା ॥
ପଅ ଯେ ତା ପାଖେ ରହିଲା । ପ୍ରାଣ ପବନ ନାମ ହେଲା ॥
ଫଅରେ ପବନ ବସିଲା । ଫୁଙ୍କାର ତାର ନାମ ହେଲା ॥
ଏମନ୍ତ ସେ ଗଡ଼ ପାଇକ । ହୋଇଲେ ବ୍ରହ୍ମର ସେବକ ॥
ତହିଁ ତଳରେ ଗଡ଼ ହୋଇ । କହିବା ତାହାକୁ ବୁଝାଇ ॥
ସେ ଗଡ଼ ପ୍ରଥମ ପବନ । କହିବା ଶୁଣ ତାର ନାମ ॥
କକାର ପବନ ବୋଲାଇ । ଯେଉଁଣେ ସେ ପବନ ବସଇ ॥
ବ୍ରହ୍ମର ପବନ ପଶ୍ଚିମେ । ଭଅ ଅକ୍ଷରେ ସେହୁ ଗମେ ॥
ତାର ଦକ୍ଷିଣେ ମ ରହଇ । ମଦନ ପବନ ବୋଲାଇ ॥
ତାହାର ବାମେ ଯେ ପବନ । ଯ ଭ୍ରର ବୋଲି ତାକୁ ଜାଣ ॥
ଉତ୍ତର ଦଗେ ସେ ବସିଲା । ରମ୍ୟ ପବନ ସେହୁ ହେଲା ॥
ଲଅ ଯେ ତା ବାମେ ବସଇ । ଲଳିତ ପବନ ସେ ହୋଇ ॥
ଗଡ଼ ନାୟକ କାମଦେବ । ତାର ପ୍ରତିଜ୍ଞା ଅସମ୍ଭବ ॥
ତହୁଁ ତଳରେ ଗଡ଼ ଯେହୁ । ନାୟକ ଗଣପତି ସେହୁ ॥
ସେହୁ ଗଡ଼ରେ ଲୋକ ଯେତେ । କହିବା ଶୁଣ ଏକଚିତ୍ତେ ॥
ବଅ ପବନ ପୂର୍ବେ ରହି । ବଳାୟୁ ତାର ନାମ କହି ॥
ଶ୍ରୀଅ ଯେ ଉତ୍ତରେ ରହିଲା । ମରତ ଶ୍ରୀମତୀ ହୋଇଲା ॥
ଷଅ ଯେ ରହଇ ପଶ୍ଚିମେ । ପବନ ସମୀର ସେ ଗମେ ॥
ସଅ ଯେ ଉତ୍ତରେ ରହିଲା । ସୁମେର ପବନ ହୋଇଲା ॥
ଏମନ୍ତ ଅଣଚାଶ ବାଇ । ଏମାନେ ପାଇକ ବୋଲାଇ ॥
କହନ୍ତି ବ୍ୟାସଙ୍କର ସୁତ । ଶୁଣ ରାଜନ ପରୀକ୍ଷିତ ॥
ଉଦ୍ଧବ ଏମନ୍ତ ଶୁଣିଣ । ପୁଣି ସେ ପଚାରେ ବଚନ ॥
ଉଦ୍ଧବ ବୋଲଇ ଶ୍ରୀଧର । କହିଲ ଗଡ଼ ଅ ଦ କର ॥
ଛସ ଗଡ଼ ନାୟକ ଅଛନ୍ତି । କେ କେଉଁ ସହସ୍ର ବହନ୍ତି ॥

ଏହାଙ୍କ ବାହନ ଯେ କିସ । କହ ହେ ପ୍ରଭୁ ପ୍ରୀତବାସ ॥
ଏମନ୍ତ ପୁଚ୍ଛଇ ଉଦ୍ଧବ । କହ ହେ ଦେବ ବାସୁଦେବ ॥

## ରତ୍ନପାଦୁକା ଉବାଚ ।

ରତ୍ନପାଦୁକା କହେ ସାର । ଶୁଣ ହେ ଭକତ ମୋହର ॥
ଗୁହ୍ୟରୁ ଲଲାଟ ପର୍ଯ୍ୟନ୍ତେ । କହିବା ଶୁଣ ଏକଚିତ୍ତେ ॥
ପ୍ରଥମେ ଗଣପତି ଜାଣ । ପାଶ ଅଙ୍କୁଶ ଧରେ ପୁଣ ॥
ବାହାନ ତାହାର ଉନ୍ଦୁର । ଦେବୀ ଯେ ବକ୍ରତୁଣ୍ଡୀ ସାର ॥
ଆର ଗଡ଼ରେ ଯେ ନାୟକ । ନାମ ତା କନ୍ଦର୍ପସାୟକ ॥
ଆୟୁଧ ଧନୁବାଣ ତାର । ତାହାଙ୍କ ବାହାନ ଉପର ॥
ଦେବୀ ଯେ ତାହାର କାମାକ୍ଷୀ । ମକରଧ୍ୱଜ ପାଖେ ଅଛି ॥
ଆର ଗଡ଼ରେ ଯେ ବ୍ୟବସ୍ଥା । କହିବା ଶୁଣ ସେହି କଥା ॥
ଗଡ଼ ନାୟକ ବ୍ରହ୍ମା ହୋଇ । ବ୍ରହ୍ମ ଯେ ସହସ୍ର ବହଇ ॥
ବାହନ ହଂସ ଯେ ବହିଛି । ସାବିତ୍ରୀ ଦେବୀ ପାଶେ ଅଛି ॥
ତହିଁ ଉପରେ ଗଡ଼ ହୋଇ । ନାୟକ ନାରାୟଣ କହି ॥
ଗରୁଡ଼ ବାହନ ତାହାର । ଆୟୁଧ ଗଦା ଚକ୍ରଧର ॥
ଦେବୀର ନାମ ଲକ୍ଷ୍ମୀ କହି । ତାହାର ପାଖରେ ବସଇ ॥
ତହିଁ ଉପରେ ଯେଉଁ ଗଡ । ତହିଁ ନାୟକ ଯୋଗାରୂଢ଼ ॥
ଆୟୁଧ ତ୍ରିଶୂଳ ପିନାକ । ପାର୍ବତୀ ଦେବୀ କାନ୍ତା ତାଙ୍କ ॥
ବାହନ ବୃଷଭ ହୋଇଲା । ଏମନ୍ତେ ଗଡ଼ ସେ ରଖିଲା ॥
ଆବର ଗଡ଼ ଯେ ଉପରେ । ରହିଛି ଶୂନ୍ୟର ଶିଖରେ ॥
ଗଡ଼ ନାୟକ ନିରଞ୍ଜନ । ମୟୂର ଅଟଇ ବାହନ ॥
ଆୟୁଧ ନୀଳ ଧ୍ୱଜ ବାଣ । ଆଉ ଯେ ଶକ୍ତିଧ୍ୱଜ ପୁଣ ॥
ମନ ଯେ ଭ୍ରୂଲତା ମଧ୍ୟରେ । ରହିଛି ନିପୁର ପାଶରେ ॥
ଆଉ ଯେ କାଳମାୟା ହୋଇ । ନାସିକ ଦ୍ୱାରେ ସେ ବସଇ ॥
ପ୍ରଥମ ଗଡ଼େ ଯେତେ ଛନ୍ତି । ସେ ଜ୍ୟୋତିର୍ଲୋକ ବୋଲାଅନ୍ତି ॥
ଦ୍ୱିତୀୟ ଗଡ଼େ ଯେ ରହିଲା । ସେ ଶିବଲୋକ ବୋଲାଇଲା ॥

କୃଷ୍ଣସ୍ତୁ ଗଡ଼ ଯେ ବୋଲଇ । ତାହାଙ୍କୁ ବିଷ୍ଣୁଲୋକ କହି ॥
ଚତୁର୍ଥ ଗଡ଼େ ଯେତେଲୋକ । ସେ ସବୁ ବ୍ରହ୍ମାର ସେବକ ॥
ପଞ୍ଚମ ଗଡ ଯେବେତ ହୋଇ । କାମଦେବଙ୍କ ଲୋକ ସେହି ॥
ଷଷ୍ଠ ଗଡ଼ରେ ଯେ ଅଛଇ । ଗଣପତିଙ୍କ ଲୋକ ସେହି ॥
ଏ ଗଡ଼େ ଯେତେଲୋକ ହୋଇ । ବିଘ୍ନରାଜଙ୍କ ତେଜ କହି ॥
ସମସ୍ତେ ପାଶ ଯେ ଅଙ୍କୁଶ । ଦେଖଣ ଉଭି ତାଙ୍କ ପାଶ ॥
ଲିଙ୍ଗରେ ଯେତେ ଲୋକ ଥାଇ । ସେ କାମଦେବ ତେଜ କହି ॥
ସମସ୍ତେ କନ୍ଦର୍ପର ଧନୁ । ନାଗର ଧରି ଉଭା ଛାମୁ ॥
ନାଭି କମଳେ ଯେତେ ଛନ୍ତି । ସେ ବ୍ରହ୍ମତେଜ ଯେ ବହନ୍ତି ॥
ସମସ୍ତେ ବେଦବିଦ୍ୟା ହୋଇ । ସମସ୍ତେ ଶାସ୍ତ୍ର ଧରି ରହି ॥
ହୃଦରେ ଯେତେକ ରହିଲେ । ସେ ବିଷ୍ଣୁତେଜଟି ବହିଲେ ॥
ସମସ୍ତେ ଶଙ୍ଖ ଚକ୍ରଧାରୀ । ଥାନ୍ତି ଶ୍ରୀହରି ସେବା କରି ॥
କଣ୍ଠରେ ଯେତେକ ହୋଇଲା । ସେ ଶିବଲୋକ ବୋଲାଇଲା ॥
ସମସ୍ତେ ଡମ୍ବରୁ ତ୍ରିଶୂଳ । ଦେଖଣ ଉଭି ଶିବ ଅଳ ॥
ଲଲାଟେ ଯେତେଲୋକ ହୋଇ । ସେ ନିରଞ୍ଜନ ତେଜ କହି ॥
ନୀଳ ଯେ ଧ୍ୱଜବାଣ କରେ । ରହିଅଛନ୍ତି ଲଲାଟରେ ॥
ଏମନ୍ତ ଗଡ଼ ସେ ଭିଆଇ । ମନ ଯେ ରାଜାପଣ ପାଇ ॥
ମୁକୁତ ମଣ୍ଡପେ ବସିଣ । ବୁଝାଇ ସବୁ ଲୋକମାନ ॥
ଶୁଣ ହେ ଭକତ ନିପୁଣ । ଏରୂପେ ଶରୀର ଭିଆଣ ॥
ଶୁଣି ଉଦ୍ଧବ ପଚାରଇ । ହେ ପ୍ରଭୁ ଶୁଣ ଭାବଗ୍ରାହୀ ॥
ଏତେକ ଲୋକ ଏ ଶରୀରେ । ରହିଲେ ଯେ ଯାହାସ୍ଥାନରେ ॥
ସଂସାରେ ଯେତେକ ମରନ୍ତି । କେମନ୍ତେ ଦଣ୍ଡେ ଜନ୍ମପତି ॥
ଏକଥା ଶୁଣିବାକୁ ମନ । କହ ହେ ଶ୍ରୀପୁରୁଷୋତ୍ତମ ॥

## ରତ୍ନପାଦୁକା ଉବାଚ ।

ରତ୍ନପାଦୁକା କହେ ଯେତେ । ସୁଜନେ ଶୁଣ ଏକଚିତ୍ତେ ॥
କହନ୍ତି ପ୍ରଭୁ ଭଗବାନ । ଶୁଣ ଭକତ ଦେଇ ମନ ॥

ଦେହରୁ ଜୀବନ ଛାଡ଼ିଲେ । ଯମ ବାନ୍ଧଇ ତାକୁ ଭଲେ ॥
ତୁ ଅବା ବୋଲିବୁ ଏମନ୍ତ । ଶୂନ୍ୟରେ ଶୂନ୍ୟ ହୁଏ ହତ ॥
ଯମ ଯେ କାହାକୁ ବାନ୍ଧିଲା । ତୋତେ କହିବା ଏହୁ ଲୀଳା ॥
ଏ ଦେହ ନିଦ୍ରାରେ ଅଛନ୍ତି । ପଡ଼ିଣ ଥାଇ ଭୂମିଗତ ॥
ସ୍ୱପନେ ଦେଖୁଥିବ ଯାଇ । ସେହୁ ପୁରୁଷ ଜୀବ ଯାଇ ॥
ପବନ ଛାଡ଼ିବାର କାଳେ । ତାକୁ ଧରଇ ଯମ ବଳେ ॥
ଧରିଣ ନିଅଇ ତା ପୁର । କରଇ ବୁଝାମଣା ତାର ॥
ଶିବ ସେବକ ହୋଇଥିଲେ । ବିଶ୍ୱନ୍ଥ ଛାଡ଼େ ତାକୁ ଭଲେ ॥
ଯେ ଦେବୀସେବା କରି ଥାଇ । ସେମାନେ ଦୁର୍ଗାପାଟଣ ଯାଇ ॥
ଯେହୁ ମୋ ହୁଅଇ ଭକତ । ତାକୁ ନ ବାନ୍ଧେ କଦାଚିତ ॥
ଆବର ଯେତେ ଲୋକ ଯାନ୍ତି । ଧର୍ମ ଅଧର୍ମ ମାର୍ଗେ ଥାନ୍ତି ॥
ତାହାକୁ ବାନ୍ଧି ନେଇଦିଅନ୍ତି । ପାପ ଦେଖିଣ ଦଣ୍ଡ ଦିଅନ୍ତି ॥
କାହାକୁ ନରକେ ପକାନ୍ତି । କାହାକୁ ବୃକ୍ଷରେ ବାନ୍ଧନ୍ତି ॥
ଏମନ୍ତେ ଘଟ ନାଶଯାଏ । ଯମ ଯେ ଛାଡ଼ିଣ ନ ଦିଏ ॥
ଘଟ ଥନାଣେ ଛାଡ଼ିଦିଅନ୍ତି । ସଂସାର ମଧ୍ୟକୁ ପକାନ୍ତି ॥
ଖୋଜଇ ଜୀବ ତତପରେ । ଆପଣା ଶରୀରେ ସେ ଦାରେ ॥
ନ ଦେଖି ନିରାଶ ହୁଅଇ । ପାଣି ଭିତରକୁ ସେ ଯାଇ ॥
ପାଣିରେ ରହେ ଦିନାଗୁରି । ଭୁଷାରେ ଅଟବାରଇ ବାରି ॥
ପୁଣିହିଁ ସୂର୍ଯ୍ୟକୁ ଗମଇ । ତହିଁରେ ସ୍ଥାନ ନ ଦେଖଇ ॥
ପିଣ୍ଡ ପୋଡ଼ିବାଠାରେ ଯାଇ । ଏମନ୍ତେ ବିକଳେ ଖୋଜଇ ॥
ସେଠାରୁ ହୁଅଇ ନିରାଶ । ଯାଇଣ ସ୍ୱର୍ଗେ କରେ ବାସ ॥
ଏମନ୍ତେ ସେ ଜୀବ ଭ୍ରମଇ । ମରଣେ ଯାହା ଦେଖିଥାଇ ॥
ଯାଇମିଳଇ ତାର ପାଶ । ଶରୀରେ ହୁଅଇ ପ୍ରବେଶ ॥
ସ୍ତ୍ରୀ ସଙ୍ଗମ ଋତୁକାଳେ । ବିନ୍ଦୁ ସଙ୍ଗତେ ସେହୁ ଚଳେ ॥
ସ୍ତ୍ରୀର ଗର୍ଭେ ସେ ରହଇ । ଦଶମାସରେ ଜାତ ହୋଇ ॥
ଯେତେକ ମାସ ଗର୍ଭେଥିଲା । ଘୋର କଷଣ ସେ ପାଇଲା ॥
ତହିଁରେ ଦେବୀ ଏକ ଥାଇ । ତାହାକୁ ସେ କଷ୍ଟ ଦିଅଇ ॥

ଦୁଇ ଯେ ପାଦ ହକ୍ରବଳ । ମୃଷ ନା ନଳକ୍ରୁ ରଖିଳ ॥
ଅନଳେ ତାହାକୁ ସର୍ପଇ । ଶୁଣ ତୁ ସାବଧାନ ହୋଇ ॥
ସର୍ପ ଯେ ଦଷ୍ଟ ପାଇ ଖରେ । ମୃଷା କାଟଇ ନଟନ୍ତରେ ॥
ପୁରୁଷେ ଲୁହା ବାଡଧର । ପିଟଇ ନଗାଟ ସେ କର ॥
ଯେ ତୋର ଉକ୍ତିଲା ପୁଣ । ପାପକର୍ମଟି ସେହୁ ଜାଣ ॥
ଅଗ୍ନିରେ ପୋଡଲା ଯହିଁରେ । ନାସ୍ତଷ କଲା ପ୍ରାଣିଠାରେ ॥
ସର୍ପ ଯେ କାଳ ହୋଇଅଛି । ଅକାଳ ମୃଷାରୂପେ ସ୍ଥିତ ॥
ଦେଖି ଯେ କାଳମାୟା ହୋଇ । ପୁରୁଷ ଯମଟି ଅଟଇ ॥
ଆବର ଦୁଇଜଣ ଛନ୍ତି । ଚନ୍ଦ ଯେ ସୁପନ ବୋଲନ୍ତି ॥
ଏମନ୍ତେ ଗର୍ଭେ ପୀଡାପାଇ । ଯୋନିରେ ଜନମ ହୁଅଇ ॥
ଯୋନିରୁ ଜନମ ହୋଇଲା । ତତ୍‌କ୍ଷଣେ ନରକେ ପଡିଲା ॥
ନାଳ ରକତ ମୂତ୍ର ହୋଇ । ପଡିଣ କ୍ରୁଢ ସେ ରହଇ ॥
ଏହାକୁ ବସ୍ତ୍ରଭୂମି କହ । ଏହାନ୍ତୁଁ ଅଧିକ ନୁହଇ ॥
ପୁଣିହିଁ ବଡା ଗୁରୁଗଲା । ମଳ ମୂତ୍ରହିଁ ସେହୁ କଲା ॥
ତହିଁରେ ଘାଣ୍ଟି ଯେ ହୁଅଇ । ଏମନ୍ତେ ନରକେ ପଡଇ ॥
ଖୁଦର ଜନ୍ତୁମାନେ ଥାନ୍ତି । ତାହାଙ୍କୁ ପୀଡା ଯେ କରନ୍ତି ॥
ବାଳକେ ଅକୁଳ ହୁଅଇ । ନିବାର ସାମର୍ଥ ନୁହଇ ॥
ମରଣେ ଯେତେ ଶାସ୍ତିଦେଲା । ଜନମେ ଦ୍ୱିଗୁଣ ପାଇଲା ॥
ଏହା ଯେ ନ ବୁଝିବେ ସେହୁ । ମାୟା ଜାଲକୁ ଅବୋରଇ ॥
ଯାହାକୁ ମାୟାଜାଲ କହ । ଶୁଣ ଉଦ୍ଧବ ମନଦେଇ ॥
ଆବର ବନ୍ଧନ ହୁଅଇ । କହିବା ସମସ୍ତ ବୁଝାଇ ॥
ଭାରିଯା ବୋଲି ଯାକୁ କଲା । ସେ ହରକାଠ ଗୋଡ଼ ଦେଲା ॥
ପୁତ୍ର ବୋଲିଣ ଯାହା କଲା । ତହିଁର କଳା ସେ ହୋଇଲା ॥
ଆବର ବନ୍ଧୁଗଣ ଯେତେ । ଏ ଜାଲମାନଟି ସଂସ୍ତେ ॥
ଏଥିରେ ପଡି ପାଶୋରିଲା । ଏ ଦୁଃଖ ମନେ ନ ଧରିଲା ॥
ଏରୂପେ ଥାଇ କେତେଦିନ । ବନ୍ଧନେ ରଖଇ ପରାଣ ॥
ପୁଣି ପ୍ରମାଣ କାଳ ହେଲ । ସେ ଜନ୍ତୁପଦ ବାନ୍ଧିନେଲା ॥

ପୁଣି ସେ ଦଣ୍ଡ ଦେଇ ଯେତେ ।　ମୂର୍ଖ ନ ଜାଣେ କଦାଚତେ ॥
ଶୁଣି ଉଦ୍ଧବ ପଚ୍ଚାରଇ ।　ହେ ନାଥ କଥାଏ ପୁଚ୍ଛଇଁ ॥
ଯେ ଯୋନିବାଟେ ଜନ୍ମ ହେଲେ ।　ତୁହ୍ମ କରୂପେ ଥାଇ ଭଲେ ॥
ତୁହ୍ମତ ଅଯୋନିସମ୍ଭୂତ ।　କେମନ୍ତେ ହେଉ ତୁହ୍ମ ଜାତ ॥
ଏ କଥା କହ ମୋ ଅଗ୍ରତେ ।　ହେ ନାଥ ପୁଚ୍ଛଇ ମୁଁ ତୋତେ ॥

## ଭଗବାନୁବାଚ ।

ଏମନ୍ତେ ତାର ବାଣୀ ଶୁଣି ।　କହନ୍ତି ପ୍ରଭୁ କମ୍ବୁପାଣି ॥
ଯାହା ତୁ ପଚ୍ଚାରଲୁ ମୋତେ ।　ସେ କଥା କହି ଦେବା ତୋତେ
ମାତାର ଗର୍ଭେ ମୁହିଁ ଥିଲି ।　ଜନ୍ମ ହୁଅନ୍ତେ ଅଢ଼ ହେଲି ॥
ଜନମ ହୋଇଣ ସେ ପଢ଼ ।　ତକ୍ଷଣେ ବସିଲି ମୁଁ ମାଢ଼ ॥
ମାଢ଼ ବସନ୍ତେ ସେ କୁମର ।　ରବ ଛାଡ଼ଇ ଉଚସ୍ୱର ॥

## ଉଦ୍ଧବ ଉବାଚ ।

ଶୁଣି ଉଦ୍ଧବ ପଚ୍ଚାରଇ ।　ହେ ନାଥ ସଂଶୟ ଲାଗିଲା ॥
ତୁମ୍ଭର କଥା ଅଗୋଚର ।　କହ ହେ ପ୍ରଭୁ ଗଦାଧର ॥
ମାତା ଗର୍ଭକୁ କେଉଁବାଟେ ।　ଯାଇ ରହିଲ ତୁମ୍ଭେ ପେଟେ ॥
ଅବର କାହିଁ ବାହାରିଲ ।　ଏହା କହିବ ଅବମୂଳ ॥
କେବଣ ସ୍ୱରୂପ ହୋଇଣ ।　ପଶିଲ ତାର ଦେହେ ପୁଣ ॥
ଏ କଥା ମୋତେ ଅଗୋଚର ।　କହ ହେ ପ୍ରଭୁ ଚକ୍ରଧର ॥

## ରତ୍ନପାଦୁକା ଉବାଚ ।

ରତ୍ନପାଦୁକା କହେ ତଥି ।　ଶୁଣ ତୁ ଦତ୍ତହେନ୍ତୁ ସୁତ ॥
ମାତା ପିଅର ସଙ୍ଗମରେ ।　ନ ଗଲି ବନ୍ଦୁର ସଙ୍ଗରେ ॥
ମୁହିଁ ଯେ ନାସାଦ୍ୱାରେ ଗଲି ।　ଯାଇଣ ଗର୍ଭରେ ରହିଲି ॥
ସେ ଦେହେ ଗର୍ଭରେ ବଢ଼ିଲି ।　ମୁଁ ଅହ୍ଲାଦରେ ବଞ୍ଚିଲି ॥
ପୁଣି ସେ ଜନମ ସମୟେ ।　ମୁଁ ତହୁଁ ଛାଡ଼ି ଦୂରେ ରହେ ॥
ମାତାର ନୟନ ଦୁଆରେ ।　ମୁହିଁ ବାହାର ତଦନ୍ତରେ ॥
ମାତା ଯେ ପୁତ୍ର ଜାତ କଲା ।　ତକ୍ଷଣେ ତାହାକୁ ଛାଡ଼ିଲା ॥

ତାହାର ନୟନେ ମୁଁ ଗଲି । ଚେତନ ସ୍ୱରୂପେ ରହିଲି ॥
ଯହୁଁ ସେ ଚେତାଣ୍ଟି ପାଇଲା । ତକ୍ଷଣେ ସବୁ ଅରମ୍ଭିଲା ॥
ମୋ ତେଜ ସହି ନ ପାରିଲା । ତକ୍ଷଣେ ସବୁ ସେନ୍ଥ କଲା ॥
ଯେସନେ ନିଦ୍ରା ଥିଲେ ଯାଇ । ତା ଚେତା ଷସାରେ ନ ଥାଇ ॥
ଶୋଇଣ ସ୍ୱପନ ଦେଖଇ । ଚେତା ପାଇଣ ସେ ଉଠଇ ॥
ସେହି ପ୍ରକାରେ ତାର ଦେହେ । ରହଇ ଭଜୁଳ ପରାଏ ॥
ମନ ଭିତରେ ମୁଁ ରହିଲି । ବ୍ରହ୍ମାଣ୍ଡ ଅତଯାତ କଲି ॥
ଏଣୁଟି ମନୁରଜା ହୋଇ । ଶୁଣ ଉଦ୍ଧବ ମନଦେଇ ॥
ମୁ ଯେଉଁରୂପେ ଅଛି ଅସି । ଚଳଚ ସେରୂପ ପ୍ରକାଶି ॥
ଏହା ଜାଣନ୍ତି ଜ୍ଞାନଜନ । ତରନ୍ତି ସଂସାର ଗହନ ॥
ଏରୂପେ ଅଯୋନ ସମ୍ଭୂତ । କହିଲି ବୁଝ ଏହି ତତ୍ତ୍ୱ ॥
ଶୁଣ ଉଦ୍ଧବ ତୋଷମନ । ନମିଲା ଗୋବିନ୍ଦ ଚରଣ ॥
ପଶ୍ଚାତେ ଶୁକମୁନି କହେ । ଏରୂପେ ଶରୀର ନିର୍ଣ୍ଣୟେ ॥
ସୁଜନ ପାଦେ ମୁହିଁ ପଡ଼ି । ମାଗଇ ବେନିକର ଯୋଡ଼ି ॥
ଏମନ୍ତ ଆଜ୍ଞା ମୋତେ ହେଉ । ନୃସିଂହ ପାଦେ ଚିତ୍ତ ରହୁ ॥
ଯେରୂପେ ହିରଣ୍ୟ ନାଶିଲେ । ଭକ୍ତକୁ ସ୍ୱର୍ଗରେ ରଖିଲେ ॥
ତାହାଙ୍କ ପାଦେ ରହୁ ଚିତ୍ତ । ନମୋ ଗୋବିନ୍ଦ ଅବଧୂତ ॥
ମୁହିଁ ଯେ ବାତୁଳ ଅଟଇ । ତେଣୁ ପଣ୍ଡିତଙ୍କୁ ଜଣାଇ ॥
ନୋହିଲା ବୋଲି ନ ବୋଲିବ । ଏତେକ ସେବା ମୋତେ ଦେବ ॥
ମୂରୁଖ ଲୋକଙ୍କୁ ମୋ ଡ଼ର । ତେଣୁ ଜଣାଏ ମୁଁ ଗୁମର ॥

ଇତି ଶ୍ରୀ ବହୁପାଦୁକା ଉଦ୍ଧବସମ୍ବାଦେ ଶୁକପରୀକ୍ଷ କଥନେ
ନାମ ଦଶମୋଽଧ୍ୟାୟଃ ।



## ଏକାଦଶ ଅଧ୍ୟାୟ ।

### ଶ୍ରୀ ଶୁକ ଉବାଚ ।

ଶୁକ କହନ୍ତି ଦିବ୍ୟବାଣୀ । ଶୁଣ ସ୍ୱଜନ ଚୂଡ଼ାମଣି ॥

## ଉଦ୍ଧବ ଉବାଚ ।

ଉଦ୍ଧବ ବୋଲଇ ଶ୍ରୀଧର । କହିଲ ମନ ସଞ୍ଚା କର ॥
ଜୀବ ପରମର ସନ୍ଦେଶ । କହ ହେ ପ୍ରଭୁ ପୀତବାସ ॥
ତାହାର ବର୍ଣ୍ଣ କସ ହୋଇ । କେମନ୍ତେ ଗମନ କରଇ ॥
କେଉଁସ୍ଥାନରେ ତାର ବାସ । କେଉଁ ରୂପରେ ହୋଏ ବଂଶ ॥
କେତେକ ପାଦ ଅଟେ ତାର । କେମନ୍ତେ ଅହାର ବେଭାର ॥
ଏମାନ କହ ନାରାୟଣ । ନମଇଁ ତୋହର ଚରଣ ॥
ଏମନ୍ତ କହି ଭକ୍ତମଣି । ଶିରେ ଯୋଡ଼ିଲେ ବେନିପାଣି ॥
ଏମନ୍ତ ଶୁଣି ତା ବଚନ । କହନ୍ତି ପ୍ରଭୁ ଭଗବାନ ॥

## ରତ୍ନପାଦୁକା ଉବାଚ ।

ଯାହା ପଚାରୁ ଭକ୍ତ ପୁଣ । ଶୁଣ ତୁ ପରମ ଲକ୍ଷଣ ॥
ପରମ ଜୀବ ଯେ ବୋଲାଇ । ଏବେନ ଯହିଁ ଜନ୍ମ ହୋଇ ॥
ଏକ ପାଖୁଡ଼ା ସେ ହୋଇଲା । ବାର ହୋଇଣ ନ ଦଶିଲା ॥
ଏ ବେନି ଯହିଁ ସେ ରଖନ୍ତି । ବ୍ରହ୍ମା ଢୋଲଣ ତା ବୋଲନ୍ତି ॥
ପରମ ଯେମନ୍ତ ଅଟଇ । କହିବା ଶୁଣ ହେ ବୁଝାଇ ॥
ବାହାରେ ଦଶଇ ସେ ବାର । ଭିତରେ ସେହୁ ପରକାର ॥
ଏ ବେନି ବାରରୁ ବାହାର । ଅବର ଅଛଇ ଯେ ବାର ॥
ସେ ବାରେ ପବନର ଠଣା । ଯହିଁ ଯୋଗୀଏ ହୋନ୍ତି ବଣା ॥
ତାହାର ପାଦ ପାଣି ନାହିଁ । ମୁଖ ଯେ ନାସା କର୍ଣ୍ଣ କାହିଁ ॥
ଅଣ ଆକାର ସେହୁ ହୋଇ । ଜୀବ ଅଜୀବ ସେ ନୁହଇ ॥
ଏମନ୍ତେ ପରମ ବୋଲାଇ । ତାକୁ କେ ଦେଖି ନ ପାରଇ ॥
ଜୀବର ବର୍ଣ୍ଣ ସେ ଯେମନ୍ତ । କେ ତାହା କରବ ତଦନ୍ତ ॥
ଦୁଇଟି ପାଦ ତା ଅଟଇ । ଶୁର ବାହୁରେ ଶୋଭା ପାଇ ॥
ଦୁଇ ଯେ ମୁଖ ତାର ହେଲା । ଶୁର ଯେ ଚକ୍ଷୁ ବୋଲାଇଲା ॥
ଦୁଇ ଯେ ନାସିକା ହୋଇଛି । ଶୁର ଯେ କର୍ଣ୍ଣ ବୋଲାଇଛି ॥
ଏକ ଶରୀର ତା ପ୍ରମାଣ । ଦିଶଇ ରାଜହଂସ ବର୍ଣ୍ଣ ॥

ଅଣ୍ଟେ ବୋଲଇ ଯେ ତାହାର । ଅନାଇ ରହିଛି ପୂର୍ବର ॥
ପରମ ବ୍ରହ୍ମ ଶୁଣ ତୁହ୍ମ । ନୀଳ ବରନ ତା ଦିଶଇ ॥
ତା ପାଦ ମରକତ ଜ୍ୟୋତି । ଉଦର ପ୍ରବାଳର କାନ୍ତି ॥
ତା ବକ୍ଷୀ ବେନ ସ୍ଥିର ପ୍ରାୟେ । ନୟନ ମାଣିକ୍ୟ କି ରହେ ॥
ଅଣ୍ଟେ ତା ସୁବର୍ଣ୍ଣର ଜ୍ୟୋତି । ଦିଶଇ ପୂର୍ଣ୍ଣିମାର କାନ୍ତି ॥
ତଳପା ରଙ୍ଗବର୍ଣ୍ଣ ତାର । ଝଳଇ କୁସୁମ ମନ୍ଦାର ॥
ଏମନ୍ତେ ପରମର ବର୍ଣ୍ଣ । ମୁଖ ତା ପଶ୍ଚିମକୁ ଜାଣ ॥
ପାଦେକ ଶୃଙ୍ଗରେ ଲାଗଇ । ଅନେକ ପାଦ ଶୂନ୍ୟେ ରହି ॥
ନୟନ ବୁଜି ନ ଅନାଇ । ମଦ୍ଧା ଶୂନ୍ୟକୁ ସେନ୍ତ ଧାଇ ॥
ରତ୍ନ ମଣ୍ଡପ ବିରାଜଇ । ଝିଙ୍କୁଳ ଛନ୍ଦ ଅଛି ରହି ॥
ଜୀବ ପରମ ଛନ୍ଦା ହୋନ୍ତି । ଏକ ଅନେକ ନ ଦେଖନ୍ତି ॥
ଦୁଇଙ୍କ ପାଦ ଏକଠାରେ । ରହିଛି ଶୃଙ୍ଗର ଉପରେ ॥
ଏମନ୍ତେ ବେନିଜନ ଥାନ୍ତି । ବୈକୁଣ୍ଠ ସ୍ଥାନକୁ ଗମନ୍ତି ॥
ସେଠାରୁ ପୁଣି ଲେଉଟିଲେ । ରହନ୍ତି ନିଜ ସ୍ଥାନେ ଭଲେ ॥
ଏରୂପେ ଜୀବ ଯେ ପରମ । ଉଦ୍ଧବ ସାବଧାନେ ଶୁଣ ॥
କହନ୍ତି ପ୍ରଭୁ ନିରାକାର । ଶବଦ ଦ୍ୱାଦଶ ପ୍ରକାର ॥
ପ୍ରଥମେ ସିନ୍ଧୁ ଘୋଷ ବାଣୀ । ଶୁଭଇ ଶୁଦ୍ଧ ଚଝଯାଣି ॥
ଦ୍ୱିତୀୟ ଶବଦ ଡାକଇ । ଚଡ଼କ ପ୍ରାୟେକ ଶୁଭଇ ॥
ଏମନ୍ତ ଶବଦ ଲିଙ୍ଗରେ । ଚଝ ତୋଳିଲେ ଶୁଭେ ଭଲେ ॥
ଅବର ଶବଦ ତୁ ଶୁଣ । କହିବା ନିର୍ବାଣ କରଣ ॥
ରଥ ଶବଦ ପ୍ରାୟେ ହୋଇ । ନାଭି କମଳେ ସେ ଶୁଭଇ ॥
ତହିଁରେ ବଜାୟେ ପରମ । ଅଛନ୍ତି ଚନ୍ଦ୍ର ସୂର୍ଯ୍ୟାୟଣ ॥
ସେଠାରେ ଶବଦ ଶୁଭଇ । ଗରଦ ମେଘ ପ୍ରାୟେ ହୋଇ ॥
ତହିଁ ଉପରେ ହୃଦୟରେ । ଶବଦ କରଛି ସେଠାରେ ॥
ତାଳକଂସାଳ ପ୍ରାୟେ ହୋଇ । ସେ ଚଝ ଶବଦ ଶୁଭଇ ॥
ତହିଁ ଉପରେ ଚଝ ଜାଣ । କଣ୍ଠରେ ହୋଇଛି ଉଥଣ ॥
ସେଠାରେ ଘଣ୍ଟନାଦ ବାଇ । ଯାହା ନିର୍ଣ୍ଣୟେ ବ୍ରହ୍ମ ପାଇ ॥

ସେ ଘଣ୍ଟନାଦ ନ ଶୁଭିଲେ । ଧ୍ୱନି ପ୍ରଣବ ଶୂନ୍ୟ ଭଲେ ॥
ଲଲାଟ ଭ୍ରୂଲତା ମଧରେ । ଧ୍ୱନି ପ୍ରବଛି ମେହଠାରେ ॥
ସେ ଧ୍ୱନି ବ୍ରହ୍ମ ବୋଲି କହି । ଏଥିରେ ସଂଶୟ ନ ଥାଇ ॥
ସେ ଧ୍ୱନିସ୍ୱନ ଯେ ଶୁଣଇ । କୋଟିଏ ପୁରୁଷ ତାରଇ ॥
ବଂଶୀରସ୍ୱନ ପ୍ରାଯ୍ୟେ ନାଦ । କରନ୍ତି ସେଠାରେ ସ୍ୱନଦ ॥
ଏହା ଯେ ଶିଶୁ ବେଦ କହି । ସେ ଧ୍ୱନି ଦର ଜାଣି ରହି ॥
ତହୁଁ ସେ ଚରାଚର ଜାତ । କହିଲୁ ବୁଝ ଏହି ତତ୍ତ୍ୱ ॥
ଏମନ୍ତ କହି ନାରାୟଣ । ପୁଣି ବୋଲନ୍ତି ସାର ଶୁଣ ॥
ବାର ଯେ ମାନା ଯାକୁ କହି । ଦ୍ୱାଦଶ ଶବଦ ଅଟଇ ॥
ଏମନ୍ତ ଶବଦର ବାଣୀ । ଗୁରୁ କହିଲେ ତାହା ଜାଣି ॥
ଶୁଣିଲେ ପଢ଼ିଲେ ନୁହଇ । କେବଳ ଗୁରୁସେବା ପାଇ ॥
ଏମନ୍ତେ ଶବଦ ଭିଆଣ । କରନ୍ତି ମନ୍ତ୍ର ସ୍ୱଏ ଶୁଣ ॥
ଉଦ୍ଧବ ଶିରେ ଦେଇ କର । ବୋଲେ ହେ ବ୍ରହ୍ମାଣ୍ଡ ଈଶ୍ୱର ॥
ଆବର କଥାଏ ଶ୍ରୀଦର । ମନରେ ପଡ଼ିଲା ମୋହର ॥
ଷଡ଼ ସ୍ୱାଦ ଯେ କି କି କହି । କାହିଁରେ ଷଡ଼ ସ୍ୱାଦ ରହି ॥
କେମନ୍ତ ଋତୁ କେ ଧେନଇ । କହିବ ଶଙ୍ଖରେ ବୁଝାଇ ॥
ଏମନ୍ତ ବୋଲନ୍ତେ ବୋଇଲା । ଚରଣ ତଳେ ପ୍ରଣମିଲା ॥
ଦେଖି ବୋଇଲେ ଚକ୍ରଧର । ହଠ ହେ ଭକତ ଶିଖର ॥
କହନ୍ତି କମଳା ରମଣ । ଉଦ୍ଧବ ଶୁଣ ଋତୁ ଗୁଣ ॥
ଚକ୍ଷୁ ନେତ୍ର ନାସା କର୍ଣ୍ଣ ଦ୍ୱୋଇ । ମୁଖ ଜିହ୍ୱାଟି ଷଡ କହି ॥
ଯାହାର ଯେମନ୍ତି ରସ । କହିବା ତହିଁର ବିଶେଷ ॥
ଚକ୍ଷୁର ସ୍ୱାଦ ରୂପ ଦେଖି । ବାସନା ନାସା ସ୍ୱାଦ ଲେଖି ॥
କର୍ଣ୍ଣର ସ୍ୱାଦ ଯେ ଶବଦ । ଜିହ୍ୱାର ସ୍ୱାଦ ମିଠାଭାବ ॥
ମୁଖର ସ୍ୱାଦ ଯେ ବଚନ । ଆତ୍ମାର ସ୍ୱାଦ କୃଷ୍ଣ ନାମ ॥
ଷଡ଼ ଯେ ଋତୁ ଶୁଣ ତୁହି । କହିବା ବଚନ ବୁଝାଇ ॥
ପ୍ରଥମ ଚନ୍ଦ୍ରରୁ ଆସିଲେ । ବସନ୍ତ ଋତୁ ବୋଲାଇଲେ ॥
ଚନ୍ଦ୍ର ଚତୁର୍ଥେ ଯେବେ ଚଳ । ଗ୍ରୀଷମ ଋତୁ ତାକୁ ବୋଲି ॥

ପଞ୍ଚମ ଚନ୍ଦ୍ରକୁ ଧରଇ । ଗ୍ରୀଷମ ଋତୁ ତାକୁ ଦେଇ ॥
ପଞ୍ଚମ ଚନ୍ଦ୍ରକୁ ଧରଇ । ବରଷା ଋତୁ ସେ ବୋଲାଇ ॥
ଷଷ୍ଠ ଚନ୍ଦ୍ରକୁ ଯେ ଗମିଲେ । ଶରତ ବୋଲି ତାକୁ ଭଲେ ॥
ଏମନ୍ତେ ଷଡ଼ଋତୁ କହି । ଶୁଣ ଉଦ୍ଧବ ମନଦେଇ ॥
କହନ୍ତି ପ୍ରଭୁ ପଦ୍ମନାଭ । ଶୁଣ ହେ ଭକତ ଉଦ୍ଧବ ॥
ଶୁଣି ଉଦ୍ଧବ ଗଦ ଗଦ । ନମିଲା ଗୋବର୍ଦ୍ଧନର ପାଦ ॥
ପ୍ରଣମ୍ୟ କରି ଭକ୍ତମଣି । ଶିରେ ଯୋଡ଼ିଲା ବେନି ପାଣି ॥

## ଉଦ୍ଧବ ଉବାଚ ।

ସ୍ତୁତି ଯେ କଲାକ ଅନାଇ । ନମସ୍ତେ ବ୍ରହ୍ମାଣ୍ଡ ଗୋସାଇଁ ॥
ନମସ୍ତେ ପରମ ପୁରୁଷ । ସକଳ ଜୀବେ ତୋର ବାସ ॥
ନମସ୍ତେ ଜମ୍ବୁ ନାରାୟଣ । ମୁହିଁ ତୋ ଚରଣେ ଶରଣ ॥
ମୋତେ ତ କୃପା କର ହରି । ଭବ ସଂସାରୁ କର ପାରି ॥
କହ ହେ ନାଥ ଏବେ ମୋତେ । ଏ ଜୀବ ନିସ୍ତାର ଯେମନ୍ତେ ॥
ସେ ବ୍ରହ୍ମ କେମନ୍ତେ ଅଛଇ । କେବଣ ଲୋକେ ଥାନ୍ତି ତହିଁ ॥
କେମନ୍ତେ ସେ ବ୍ରହ୍ମର ରୂପ । କହ ଶରୀରୁ ଜାତ ପାପ ॥
ସେ ଭୂମି କେମନ୍ତ ଅଛଇ । କବର୍ଣ୍ଣ କେମନ୍ତ ଦିଶଇ ॥
ସେ ବ୍ରହ୍ମ ବହନ୍ତି ଶରୀରେ । ଲାଗିଲା ନାହିଁ ବଳସ୍ଥରେ ॥
କେମନ୍ତ ଆକାରେ ସେ ଅଛି । କହ ହେ ପ୍ରଭୁ ଶିରୀବତି ॥
ଏମନ୍ତ ବୋଲି ସେ ଉଦ୍ଧବ । ଆନନ୍ଦେ ହେଲା ପ୍ରେମଭାବ ॥
ଚରୁ ତା ତହିଁ ନମସ୍କରିଲା । ନସ୍ତୁନ ବୁଜ ସେ ବନ୍ଦିଲା ॥
କହନ୍ତି ଶୁକ ମୁନିବର । ଶୁଣ ହେ ଉତ୍ତରା କୁମର ॥
ଏମନ୍ତି କହନ୍ତି ସେ ମୁନି । ରଜା ପୁଚ୍ଛଇ ପୁଣି ପୁଣି ॥
ଧୂପ ଯେ ଦୀପ ନଇବେଦ୍ୟ । ପୂଜିଲା ମୁନିଙ୍କର ପାଦ ॥
ସାନନ୍ଦଚିତ୍ତେ ନୃପବର । ଶିରେ ଯୋଡ଼ିଲା ବେନିକର ॥
କହ ହେ ମୁନି ଏବେ ମୋତେ । ନିସ୍ତାର ହୋଇବ କେମନ୍ତେ ॥

## ମୁନିରୁବାଚ ।

ମୁନି କହନ୍ତି ପ୍ରେମଭାବେ । ଶୁଣ ରାଜନ ଅନୁଭାବେ ॥

ସେ ଶୁକମୁନିଙ୍କ ପଶ୍ଚାତରେ । ଯେବା ମୋ ଚିତ୍ତ ନିରନ୍ତରେ ॥
ମୋ ଦୋଷ ନ ଧର ସୁଜ୍ଞାନୀ । ମୁଁ ମୂଢ଼ କରଇ ଦଇନୀ ॥
କହେ ଗୋବିନ୍ଦ ଅବଧୂତ । ଲକ୍ଷ୍ମୀ ନୃସିଂହ ପାଦେ ଚିତ୍ତ ॥
ଏ ରହୁପାଦୁକାର ବାଣୀ । ଶୁଣ ସଂସାରୁ ତର ପ୍ରାଣୀ ॥

ଇତି ଶ୍ରୀ ରହୁପାଦୁକା ଉଦ୍ଧବ ସମ୍ବାଦେ ପରମ ବର୍ଣ୍ଣନେ
ଶୁକ ପରୀକ୍ଷ କଥନେ ନାମ ଏକାଦଶୋଽଧ୍ୟାୟଃ ।



# ଦ୍ୱାଦଶ ଅଧ୍ୟାୟ ।

ରହୁପାଦୁକା ମନେ ଧ୍ୟାଇ । କହନ୍ତି ଉଦ୍ଧବକୁ ଗୁହିଁ ॥
ଶୁଣ ହେ ଭକତ ନିପୁଣ । କହିବା ବ୍ରହ୍ମର ଲକ୍ଷଣ ॥
ଯାହା ତୁ ପଚାରିଲୁ ଭାବେ । ତାହା କହିବା ଶୁଣ ଏବେ ॥
ସ୍ଥାନ ଯେ ବଡ଼ ସରୁ ହୋଇ । ଯେବଣ ଭୂମି ଯେ ଅଛଇ ॥
ଛିଦ୍ର ଅଛିଦ୍ର ନାହିଁ ତହିଁ । ଏକଇ ସର୍ବ ଯେ ଅଟଇ ॥
ପାପ ଯେ ପୁଣ୍ୟ ସେ ନୋହିଲ । ସମସ୍ତ ଏକାକାର କଲ ॥
ଜ୍ଞାନୀ ଅଜ୍ଞାନୀ ସେ ଯହିଁରେ । ବାର ନୁହନ୍ତି ସେହୁ ଭଲେ ॥
ମାନିତ ଗଉରବ ନାହିଁ । ଗୁରୁ ଶିଷ୍ୟଙ୍କ ଅବା କାହିଁ ॥
ଜାତି ଅଜାତି ନାହିଁ ତହିଁ । ଏମନ୍ତ ସେ ସ୍ଥାନ ଅଟଇ ॥
ଚନ୍ଦ୍ର ଯେ ସୂର୍ଯ୍ୟ ତହିଁ ତୁଛ । ଯେତେ ଲୋକ ତହିଁ ମୋକ୍ଷ ॥
ଯାହାକୁ ଉର୍ଦ୍ଧ୍ୱେ ମୁନିଗଣେ । ଭାବନ୍ତି ଚିତ୍ତ ସନ୍ଧ୍ୟାନେ ॥
ନିତ୍ୟ ରହାସ ସେ ଅଟଇ । କହିବା ଶୁଣ ମନ ଦେଇ ॥
ଯେମନ୍ତେ ବୃନ୍ଦାବନେ ହେଲ । କୃଷ୍ଣ ତହିଁରେ ଲୀଳା କଲ ॥
ଅବର ନୀଳ ଯେ ଶିଖରେ । କେମନ୍ତେ ଅଛଇ ସେଠାରେ ॥
ତେମନ୍ତ ତାର ମସ୍ତକର । ରହିଛି ମଣ୍ଡଳ ଆକାର ॥
ରାଧା ଯେ କୃଷ୍ଣ ତହିଁ ଛନ୍ତି । ନିତ୍ୟ ରହାସ ସେ କରନ୍ତି ॥
ସର୍ବଦାକାଳେ ସେ ରହାସ । କହିଣ ନୁହନ୍ତି ସନ୍ତୋଷ ॥

କୋଟିଏ ବର୍ଷ ପ୍ରଳେ ଗଲେ । ସେ ନିତ୍ୟ ନ ଭଙ୍ଗଇ ଭଲେ ॥
ଦଶ ଯେ ଅବତାର ହୋନ୍ତି । ତାହାଙ୍କ ଅଙ୍ଗରେ ରଳନ୍ତି ॥

## ଉଦ୍ଧବ ଉବାଚ ।

ଶୁଣି ଉଦ୍ଧବ ପଚାରଇ । ସେ ରାଧା କେମନ୍ତେ ଜନ୍ମଇ ॥
ଯୋଗ ଯେ ମାୟା କାହିଁ ହେଲା । ସେ ପ୍ରେମରୂପା ବୋଲାଇଲା ॥
କହ ହେ କମଳାର ବର । ନମଇ ତୋହର ପୟର ॥
ରହୁପାଦୁକା କହେ ବାଣୀ । ପ୍ରେମ ପୁଲକେ ଛଡ଼ ଅଣି ॥
ଗଦ୍‌ଗଦେ କହେ ନାରାୟଣ । ଶୁଣ ଭକତ ଦେଇ ମନ ॥
ଯାହା ତୁ ପଚାରିଲୁ ଏବେ । ସେ ରାଧା ଜନ୍ମର ପ୍ରସ୍ତାବେ ॥
କେବଳ ମହାନିତ୍ୟ ସେହି । ତାହାଙ୍କ ଜନ୍ମ ମୃତ୍ୟୁ ନାହିଁ ॥
ସେ ନିତ୍ୟେ ସର୍ବଦା ରହନ୍ତି । ନିତ୍ୟ ଅକ୍ଷୁତେ ରହିଛନ୍ତି ॥
ସେ କଥା କେତେହେଁ କହିବା । ଏହା ନ ଜାଣେ ସୁର ଦେବା ॥
ଯହିଁକି ବ୍ରହ୍ମା ଯାଇ ନାହିଁ । କେ ତାହା ମୁଖେ ପାରେ କହି ॥
ପବନ ଚନ୍ଦ୍ର ସୂର୍ଯ୍ୟ ଯେତେ । ତହିଁ ନ ଯାନ୍ତି କଦାଚିତେ ॥
ଦୁଇ ଯେ ଜନେ ବେଶ ହୋଇ । ଦୁହିଙ୍କି ଦୁହେଁ ଛନ୍ତି ଚୁହିଁ ॥
ପଲକେ ହୋଇଲେ ଅନ୍ତର । ରହି ନ ପାରେ ସୀମାନ୍ତର ॥
ସେ ଦୁହେଁ ନବଢ଼େ ଅଛନ୍ତି । ବାର ହୋଇଣ ନ ଦିଶନ୍ତି ॥
ଯେସନେ କ୍ଷୀରନୀର ମିଶି । ବାର ହୋଇଣ ସେ ନ ଦିଶି ॥
ସେହି ରୂପରେ ଦୁଇ ଜନ । ଅଛନ୍ତି ମହାନିତ୍ୟେ ପୁଣ ॥
ଏକଥା ଦୃଷ୍ଟି ଅଗୋଚର । ଜାଣନ୍ତି ଭକତ ଶେଖର ॥
ନାରଦ ମାଧବ ଜାଣିଲେ । ଦେଖିଣ ବ୍ରହ୍ମାକୁ କହିଲେ
କୃଷ୍ଣର ବେଶ ଏବେ ଶୁଣ । କହିବା ତୋର ଅଗେ ପୁଣ ॥
ନୀରଦ ମେଘ ବର୍ଣ୍ଣ ହୋଇ । ବଦନ ଚନ୍ଦ୍ରର ନିନ୍ଦଇ ॥
ମସ୍ତକେ ହେମୁଣ୍ଡର ଚୂଳ । ବେଢ଼ିଛି ଗୁଞ୍ଜାର ମାଳ ॥
ବିବିଧ କୁସୁମ ସାଜିଛି । ବାସରେ ଜଗତ ମୋହୁଛି ॥
ମୟୂରଚନ୍ଦ୍ରିକା ଉପରେ । ଯେସନେ ପୂର୍ଣ୍ଣିମା ହରଷିରେ ॥

କପୋଳେ ଝଲକାର ମାଳ । ଚନ୍ଦନ ଭ୍ରୂଲତା ମଧ୍ୟର ॥
କର୍ଣ୍ଣେ କୁଣ୍ଡଳ ବସାଇଛି । କୁଣ୍ଡଳ ସୂର୍ଯ୍ୟକୁ ଗଞ୍ଜଇ ॥
ଭ୍ରୂଲତା କାମଧେନୁ ହୋଇ । ମାଣିକ୍ୟ ନୟନ ଦିଶଇ ॥
ଅଞ୍ଜନ ତହିଁର ପାଖରେ । ନାଗର ପ୍ରାଣେ ଶୋଭାକରେ ॥
ନାସାକୁ ଉପମା ଯେ ନାହିଁ । ତିଳ କୁସୁମ ନ ସଟଇ ॥
ନାସାରେ ବସଣୀ ଶୋହୁଛି । ମୁକୁତା ତହିଁ ବସିଅଛି ॥
ଅଧର ବିମ୍ବାଫଳ କାନ୍ତି । ଦନ୍ତ ଡାଳିମ୍ବ ବୀଜପନ୍ତି ॥
ବାହୁରେ ହାର ଯେ କଙ୍କଣ । ମୁଦ୍ରିକା ଅଙ୍ଗୁଷ୍ଠେ ଭୂଷଣ ॥
ହୃଦରେ ମୁକୁତାର ମାଳ । ନକ୍ଷତ୍ର ହେମ କି ମଣ୍ଡଳ ॥
କଳାମେଘରେ ତାରା ଯେହ୍ନେ । ମୁକୁତା ଦିଶଇ ତେସନେ ॥
ବୈଦୂର୍ଯ୍ୟ ରତ୍ନମାଳା ଗଳେ । ଲମ୍ବି ପଡ଼ିଛି ବକ୍ଷସ୍ଥଳେ ॥
ପଦ୍ମକମାଳା ଯେ ବସନ । ମାଣିକ୍ୟ ତହିଁ ପାଖେ ଖଞ୍ଜି ॥
କଟିକି ପଟାନ୍ତର ନାହିଁ । କେଶରୀ ମଧ୍ୟାକୁ ଗଞ୍ଜାଇ ॥
ପୀତ ଯେ ପାଟ ପିନ୍ଧିଅଛି । ଘନେ କି ବିଜୁଳି ରହିଛି ॥
ଜାନୁକୁ ଉପମା ନ ଦେଇ । ଉଲଟରମ୍ଭା ନ ଗଞ୍ଜଇ ॥
ବେଢ଼ି ଚରଣକୁ ନୂପୁର । ଧରେ ଚରଣକୁ ସୁନ୍ଦର ॥
ପାଦ ତା ରଙ୍ଗ ବର୍ଣ୍ଣି ଧଣି । ଉଦୟ ଭାନୁ ଯେହ୍ନେ ଅଧ ॥
ଏମନ୍ତ ବେଶ ହୋଇକରି । ରାଧାକୁ କୋଳେ ଛନ୍ତି ଧରି ॥
ରାଧାଙ୍କ ବର୍ଣ୍ଣିମାନ ଯେତେ । ଶୁଣ କହିବା ଏକଚିତ୍ତେ ॥
ଲକ୍ଷଣୀ ପେଟୁଲା ଉପମା । ଅତି ସୁକୁମାର ସେ ବାମା ॥
ଶରୀର ଦଗଧର କାନ୍ତି । ଉପମା କେହି ନ ଗଞ୍ଜନ୍ତି ॥
କେତକୀ ସମ ହୋଇଥିଲା । ଭସ୍ମ ସକାଶୁ ନ ଗଞ୍ଜିଲା ॥
ତସ୍ମାହିଁ ସମ ଯେ ନୋହିଲା । ତେଣୁଟି ଛୁରି ମାରିହେଲା ॥
ଚନ୍ଦ୍ରମୁଖୀକୁ ଗଞ୍ଜିଥିଲା । କଳଙ୍କ ଲାଗି ନ ଗଞ୍ଜିଲା ॥
ଏମନ୍ତେ ତାହାର ଶରୀର । ଲାଗିଛି ଦିବ୍ୟ ଅଳଙ୍କାର ॥
କେଶ କୁଞ୍ଚିତ ତା ଦିଶଇ । ବେଣୀ ଯେ ପଛକୁ ଲମ୍ବଇ ॥
ତହିଁରେ ସୁବର୍ଣ୍ଣର ଝମା । ମୁକୁତା ବସେ ଥୋପା ଥୋପା ॥

କପୋଳେ ପାତଅ ସୁନ୍ଦର । ଝଲକା ତହିଁ ର୍ଶ ଶାଖର ॥
ଧବ୍ୟ କୁସୁମେ ଗନ୍ଧ ଖାଇଲେ । ପାଧିଜାତକ କ ବଗୁଣ୍ଡିଜ ॥
କଣ୍ଠପାଳେ ସିମନ୍ତ୍ରକା ହୋଇ । ହାର ମାଣିକ୍ୟ ଯୋଗ୍ୟପାଇ ॥
ଉପମା ସୂର୍ଯ୍ୟଙ୍କୁ ହୋଇବ । କରଣେ ଚନ୍ଦ୍ର ନ ଘଟିବ ॥
କର୍ଣ୍ଣ ଉପରେ ମଲ୍ଲକଢ଼ି । ହୀର ମାଣିକ୍ୟେ ଛନ୍ଦ କଢ଼ି ॥
ତହିଁର ତଳରେ ଝଲକା । ଦିଶଇ ସୁଘଟଣ ଏକା ॥
ମୁକୁତା ମଧ୍ୟରେ ବସିଛି । କୋଟିଏ ରବିକ ଜିଣୁଛି ॥
ତହିଁର ତଳେ ଫୁଲଅଛି । କୋଟିଏ ଚନ୍ଦ୍ର ନୋହେ ଗଛି ॥
ତଳେ ଘାଣ୍ଟି ଅଛି ସାଜ । ଜାଲି କର୍ମରେ ସେ ବିରାଜ ॥
ସନ୍ଦୁର ବିନ୍ଦୁ ଭ୍ରୂ ମଧ୍ୟରେ । ଚନ୍ଦନ ଗନ୍ଧର ପାଖରେ ॥
ପୂର୍ଣ୍ଣିମୀତାରୁ ଯେତେ ବଢେ । ତାହାକୁ ଜିଣ ସେ ନ ହୁଏ ॥
ଭ୍ରୂ ଲତା କାମର ଖରଶ । କଜ୍ଜଳ ନାଗର ଶୋହନ୍ତ ॥
ନୟନ କଟାକ୍ଷ ଗୃହାଣୀ । ବନେ କ ରତପତ ଟାଣି ॥
ଦିବ୍ୟଘଟଣ ନାସା ହୋଇ । ତିଳକୁସୁମ ନ ଘଟଇ ॥
ନାସାରେ ନାକଚଣା ହୋଇ । ମୁକୁତା ଲୋଥ ବିରାଜଇ ॥
ବାମପୁଡ଼ାରେ ଦି[illegible]ଚୁଣା । ବସଣୀ ତହିଁ ତାର ଜଣା ॥
ବନ୍ଧୁଲି ପୁଷ୍ପକୁ ଅଧର । ମୁକୁତା ପ୍ରାୟେ ଦନ୍ତ ଧର ॥
କଣ୍ଠକୁ ରତ୍ନମାଳା ଶୋହେ । ହୀରାମାଣିକ୍ୟ ବିରାଜଏ ॥
କଣ୍ଠରେ କଣ୍ଠମାଳା ଅଛି । ପାତଅ ତଥିରେ ବସିଛି ॥
ହୀରାପଦେକ ହୀର ଲମ୍ବ । ମାଣିକ୍ୟ ତହିଁ ପାଖେ ଲାଗେ ॥
ବାହୁରେ ତାଡ଼ ଖଞ୍ଜିଅଛି । ଶିକୁଳି ତହିଁକି ଯୋଡ଼ିଛି ॥
ହସ୍ତରେ ସୁବର୍ଣ୍ଣର ଚୁଡ଼ି । ଦର୍ପଣ ବସେ ଧାଡ଼ି ଧାଡ଼ି ॥
ଅଷ୍ଟରତନ ଜଡ଼ିଅଛି । ତହିଁରେ ସମସ୍ତ ଦିଶୁଛି ॥
ଅଙ୍ଗୁଷ୍ଠ ଠାବରେ ମୁଦ୍ରିକା । ହୀର ମାଣିକ୍ୟ ନୋହେ[illegible]ଶା ॥
କୁଚ ତା ଦିଶେ ସୁଘଟନ । ହେମ ଫରୁଆ କୁନ୍ଦ ଜାଣ ॥
କଟି ତା ଶୀଙ୍ଘ ମଧ୍ୟା ଜାଣ । ଦିଶଇ ଡମ୍ବରୁ ଉଜାଣି ॥
ସିରତ୍ନ ଘାଗ୍ରା ପିନ୍ଧିଅଛି । ଗଉର ବର୍ଣ୍ଣକୁ ଯୋଡ଼ିଛି ॥

ପାଟଥ କଷ୍ଟୁଲିରେ ଅଛି । ବେଣୀ ଲମ୍ବି ଜାନୁକୁ ଲମ୍ବିଛି ॥
ଜାନୁ ଉଲ୍ଲଟ ରମ୍ଭା ଜଣି । ପଦ୍ମରେ ପାଦ୍ମର ଗଞ୍ଜଣୀ ॥
ଚଳାପାଖରେ ଯେ ପାଗୁଡ଼ି । ଗୁଳନ୍ତି କରୁଅଛି ରଢ଼ି ॥
ନୂପୁର ଅଙ୍ଗୁଳିରେ ଅଛି । ଅଳତା ବସନ ଦଶୁଛି ॥
ଏମନ୍ତ ହୋଇ ସେହୁ ବେଶ । କୃଷ୍ଣଙ୍କୁ ଦେଖି ହସ ହସ ॥
କୃଷ୍ଣ କାମରେ ଭୋଳା ହୋଇ । କୋଳରେ ଧଇଲେକ ଯାଇ ॥
ଦେଖି ନୂପୁର ଅଡ଼ ହେଲ । ସେ ଅର୍ଦ୍ଧମାତ୍ରା ନବାଜିଲ ॥
ଦୁହିଙ୍କ ଅଙ୍ଗ ଯେ ଲାଗିଲା । ତତ୍କ୍ଷଣେ ନାସିକାନ୍ତ ହେଲା ॥
ଦେଖିଲ ଦୁହେଁ ଅସମ୍ଭାଳ । ବସନ ଖସିପଡ଼େ ତଳ ॥
ତକ୍ଷଣେ ଉଲଟି ରହିଲ । ବସନ ତା ହୃଦେ ପଡ଼ିଲ ॥
ତା ହୃଦ ଭିତର ମଧ୍ୟରେ । ରହିଲେ ରାଧାକୃଷ୍ଣ ଧୀରେ ॥
ଦୁହିଙ୍କି ହୃଦରେ ଧଇଲ । ଉଲଟି ରହି ସେ ଗୃହିଣୀ ॥
ଯନ୍ତ୍ର ଚୁମ୍ବ ପ୍ରେମରୁ ଜନ୍ମିଲ । ତେଣୁ ଟି ପ୍ରେମରୂପା ହେଲ ॥
ସେ ନାରୀ ଅତ୍ୟନ୍ତ ସୁନ୍ଦର । ହସାଇ ସେ ତପ ଶରୀର ॥
କେଶ ତା ଭ୍ରମର ହୋଇଛି । ବେଣୀ ଯେ ନଳକୁ ଲାଗିଛି ॥
ମଥାରେ ଚମ୍ପାଗଭ ଥୋପା । ବେଣୀରେ ମାଣିକର ଝୁମ୍ପା ॥
ପାଟଥ ଝଲକା କପୋଳେ । ସୁନ୍ଦର ଭ୍ରୂଲତା ମଧ୍ୟରେ ॥
ବାହୁରେ ହେମ ତାଡ଼ ଚୂଡ଼ି । ମୁଦ୍ରିକା ଅଙ୍ଗୁଳେ ଉଡ଼ି ॥
ନାସାରେ ବସନ ଶୋଭଇଛି । ଅଧର ରଙ୍ଗବର୍ଣ୍ଣ ଦିଶି ॥
ହୃଦେ ତବଧ ଅଳଙ୍କାର । କଣ୍ଠରେ ତାଟକ ସୁନ୍ଦର ॥
କଟିରେ ନୀଳଶାଢ଼ି ଶୋହେ । ଶ୍ୱେତ ଶଙ୍ଖରେ ଶୋଭା ପାଏ ॥
ଚରଣେ ପାଶ୍ଳିଡ଼ ନୂପୁର । ଏମନ୍ତେ ସୁନ୍ଦର ଶରୀର ॥
ତାହାଙ୍କ ଶରୀରୁ ବାହାର । ହୁଅନ୍ତି ଦେବମାନେ ବର ॥
ଢଗ[illegible] ବହ୍ନି ଜନ୍ମିଲ । ଏମନ୍ତେ ନିତ୍ୟ ଆରମ୍ଭିଲ ॥
ତାହାଙ୍କୁ ମହାନିତ୍ୟ କହି । ଶୁଣ ଉଦ୍ଧବ ମନ ଦେଇ ॥
ବେଦକୁ ଯନ୍ତ୍ର ଜନ୍ମକାଲ । ନୂପୁର ପାଇଁ ଅଙ୍କୋରିଲ ॥
ନୂପୁର ଝାଙ୍କା ଉଥଇଲ । ପ୍ରଥମେ ଷଟ୍‌କୋଣ କଲ ॥

ଅଷ୍ଟମେ ହୋଇ ଜାତକଲ । ବଷ୍ଟ ଚଉଷଠି ଖଞ୍ଜିଲା ॥
କେନ୍ଦ୍ରକୁ ରଖିଲ ସେ ଦ୍ୱାରେ । ଚଉଷଠି ଗୃହ ପାଖରେ ॥
ସମସ୍ତ ସ୍ତ୍ରିୟ ଜାତକଲ । ଷୋଳଦଳରେ ସେ ରହିଲ ॥
ପ୍ରେମ ଯେ ରୁପା ତ୍ରିକୋଣ । ହୋଇଛି ଯନ୍ତ୍ର ସେ ଭୂଷଣ ॥
ଦୁଇଚରଣ ଦୁଇକୋଣ । ହୋଇଲ ଅତ୍ୟନ୍ତ ନିର୍ବାଣ ॥
ମସ୍ତକ ଅଗ୍ରକୋଣ ହେଲ । ଏଣୁ ତ୍ରିପୁର ବୋଲାଇଲ ॥
ଯେଣୁ ସେ ତିନ୍ହିଙ୍କି ଧରଇ । ଏଣୁଟି ଯୋଗମାୟା ହୋଇ ॥
କୃଷ୍ଣର ଦୃଷ୍ଟି ଈଶାନରେ । ପତନ କଲ୍ଲିଲା ଅକ୍ଷରେ ॥
ତାହାକୁ କାମବୀଜ କହି । ଶୁଣ ଉଦ୍ଧବ ମନଦେଇ ॥
ସେ କାମବୀର୍ଯ୍ୟ କୃଷ୍ଣହୋଇ । ତା ଦୃଷ୍ଟି ଯନ୍ତ୍ରେ ସେ ପଡ଼ଇ ॥
ରାଧାର ନୈର୍ଋତ କୋଣରେ । ଦୃଷ୍ଟି ଯେ ପଡ଼ିଲା ସେଠାରେ ॥
ତହିଁରୁ ରମା ଜାତ ହେଲ । ରାଧାରି ଅଙ୍ଗ ସେ ବହିଲ ॥
ତେଣୁ ସେ ତାକୁ ରାଧା କହି । ତା ଦୃଷ୍ଟି ଯନ୍ତ୍ରେ ସେ ପଡ଼ଇ ॥
ଏ ଭାବେ ପ୍ରେମାରୁପା ଦୃଷ୍ଟି । ଲକ୍ଷ୍ମୀ ଜନ୍ମିଲ ଜାଣ ସେଠି ॥
ଲକ୍ଷ୍ମୀକୁ ପ୍ରେମରୁପା କହି । ତା ଦୃଷ୍ଟି ଯନ୍ତ୍ରେ ସେ ପଡଇ ॥
ପ୍ରେମରୁପାଙ୍କ ଦୁଇପାଦ । ମସ୍ତକ ତ୍ରିକୋଣ ଭାବ ॥
ମସ୍ତକ ବାୟୁବେ ରହିଲ । ଈଶାନେ ବାମପାଦେ ଦେଲ ॥
ଦକ୍ଷିଣ ପାଦ ନୈର୍ଋତରେ । ରାଧାକୃଷ୍ଣ ଯେ ହୃଦୟରେ ॥
ଷଷ୍ଠ ଯେ ଅଷ୍ଟ ସେ ଦଶର । ଏହି ପଲଙ୍କ ବୋଲାଇଲ ॥
ସେଠାରେ ଯେତେ ନାରୀଛନ୍ତି । କୃଷ୍ଣଙ୍କୁ ଗୃହିଣ ବହନ୍ତି ॥
ବାଲ ଯେ ବୃଦ୍ଧା ସେ ନୁହନ୍ତି । ଅଶ୍ଚର୍ଯ୍ୟ ରୂପ ବହନ୍ତି ॥
ସମସ୍ତେ ନବଯୁବା ହୋଇ । ବାର ବରଷୁ ତେଣେ ନାହିଁ ॥
ଯେ ଯାହା ସେବାରେ ଅଛନ୍ତି । କୃଷ୍ଣଙ୍କୁ ଗୃହିଣ ବହନ୍ତି ॥
ଏମନ୍ତେ ନାନା ସେବାକର । ନିତ୍ୟେ ଖଟନ୍ତି ନିରନ୍ତରେ ॥
ଏମନ୍ତେ ନିତ୍ୟର ବୃତ୍ତାନ୍ତ । କହନ୍ତି ଶୁଣ ହେ ଐକାନ୍ତ ॥
ଶୁଣି ଉଦ୍ଧବ କୃତକୃତ୍ୟ । ପଡ଼େ ଗୋବିନ୍ଦ ପାଦଗତ ॥

## ଉଦ୍ଧବ ଉବାଚ ।

ହେ ନାଥ କହ ଏବେ ମୋତେ । ସେଠାକୁ ଯିବି ମୁଁ କେମନ୍ତେ ॥
କେଉଁଣ ଦଳେ ବାଟ ହୋଇ । କହ ମୁଁ ଶୁଣିବି ଧ୍ୟାଇ ॥
ରତ୍ନପାଦୁକା କହେ ଧୀରେ । ବଚନ ମଧୁର ଗମ୍ଭୀରେ ॥
ଅଷ୍ଟ ଯେ ଦଳଠାରେ ବାଟ । ଗୋଲ୍ହାଟର ପରେ ଭେଟ ॥
ନିପୁର ସେଠାରେ ରହିଛି । କାହାକୁ ଛାଡ଼ ନ ଦେଉଛି ॥
ତାହାକୁ ପ୍ରତେ ତୁ ହୋଇବୁ । ତେବେ ସେ ନିତ୍ୟସ୍ଥଳ ଯିବୁ ॥
ଏମନ୍ତେ ନିତ୍ୟ ବ୍ରହ୍ମବାଣୀ । କହିଲେ ପ୍ରଭୁ ଚକ୍ରପାଣି ॥
ଉଦ୍ଧବ ଶୁଣି ତୋଷ ହେଲା । ଗୋବିନ୍ଦ ଚରଣେ ପଡ଼ିଲା ॥
ଉଠି ଯୋଡ଼ନ୍ତେ ବେନିକର । ପରମ ହୋଇଲେ ଅନ୍ତର ॥
ଅପଣା ହୃଦରେ ରହିଲା । ଉଦ୍ଧବ ତାହା ନ ଜାଣିଲା ॥
ଉଦ୍ଧବ ବିସ୍ମରିଲା ମନେ । କାହିଁ ସେ ଗଲେ ଅନ୍ତର୍ଦ୍ଧାନେ ॥
ଏମନ୍ତ ବୋଲିଣ ହୋଇଲା । ପୁଣି ସେ ଧ୍ୟାନରେ ବସିଲା ॥
ଦେଖିଲା ଅପଣା ହୃଦରେ । ରହିଛି ଲକ୍ଷ୍ମୀ ଧରି କୋଳେ ॥
ଦେଖି ସନ୍ତୋଷ ସେ ହୋଇଲା । ନିତ୍ୟ ବ୍ରହ୍ମକୁ ଧ୍ୟାନ କଲା ॥
ସେଠାରେ ଧ୍ୟାନ ତା ଲାଗିଲା । ଏ ପାପ ପୁଣ୍ୟ ନ ଜାଣିଲା ॥
ହେଣିକ ବୁଝିଲା ଅନାଇଁ । ସମସ୍ତ ବ୍ରହ୍ମରୂପ ହୋଇ ॥
ଦେଖି ସାନନ୍ଦ ତାରମନେ । ଉଠିଲା ସେ ସ୍ଥାନୁ ବହନେ ॥
ସଁକତମାନଙ୍କର ଅଗେ । ବିସ୍ତାରକଲା ଶବ୍ଦଭାବେ ॥
ଭକତ୍ତ ବିସ୍ତାରି ସେ ଜ୍ଞାନ । ନିର୍ଣ୍ଣୟେ ହୋଇ ସେହୁ ସ୍ଥାନ ॥
ନିତ୍ୟରୁ ଷୋଳଦଳ ଯାଇ । ରହିଲା ଘଣିରୂପ ହୋଇ ॥
ଚମଳା ସଖୀ ରୂପ ବୋଲାଇ । ଚାମର ଧରି ସେ ଖଟଇ ॥
କୃଷ୍ଣ ହୋଇଲେ ଅବତାର । ପୁଣିହି ହୁଅନ୍ତି ବାହାର ॥
କୃଷ୍ଣ ର ସଙ୍ଗେ ଲୀଳା କରି । ପୁଣି ସେ ନିତ୍ୟରେ ସଞ୍ଚରି ॥
ଏମନ୍ତ ଉଦ୍ଧବ ଭକତ । ଶୁଣ ସୁଜନେ ଦେଇ ଚିତ୍ତ ॥
କହନ୍ତି ଶୁକ୍ର ମୁନିବର । ଉଦ୍ଧବ ନ୍ୟାଗର ବିସ୍ମର ॥
ସୁଜନେ ଶୁଣ ମନଦେଇ । ଏଥିରେ ମୋର ଦୋଷନାହିଁ ॥

ମୂର୍ଖ ଜନକୁ ନ କହିବ । ଏମନ୍ତେ ଯେ ଏହା ଧରିବ ॥
ଶ୍ରୀଲକ୍ଷ୍ମୀ ନୃସିଂହ ଅଙ୍କରୁ । ଏ ପଦ ପଢ଼ିଲା ହୃଦରୁ ॥
ବୈଷ୍ଣବମାନଙ୍କ ଚରଣ । ଦ୍ୱିଜମାନଙ୍କ କଲ୍ୟାଣ ॥
ପଣ୍ଡିତଜନ ବାଞ୍ଛା ହେଲା । ତେଣୁ ସେ ଏ ପଦ ପୂରିଲା ॥
ଅବର ଗୁରୁ ଦୟା କଲେ । ମନ୍ତ୍ର ଯେ ଉପଦେଶ ଦେଲେ ॥
ଏମନ୍ତ ହୋଇଲାକ ଯନ୍ତ୍ର । ମାତା ପିତାଙ୍କ ଦୟା ତନ୍ତ୍ର ॥
ମୋ ଘର ଅଟଇ ବାଲ୍ମୁତ । ଷଢି ଯୁ କୁଳରେ ସମ୍ଭୂତ ॥
ଲକ୍ଷ୍ମୀ ନୃସିଂହ ଦୟାକଲେ । ଏ ପଦ ହୃଦରେ କହିଲେ ॥
ତାହାଙ୍କ ଅଙ୍କରେ କହିଲି । ବେଦ ଶାସ୍ତ୍ର ନ ପଢ଼ିଲି ॥
ବାଣ ରତନ ଯେ ବଟେଷାଇ । ତାହାଙ୍କ ସୁତ ମୁଁ ଅଟଇ ॥
ମୋହର ନାମ ଗୋପୀନାଥ । ଗୁରୁ ଅମର ଅବଧୂତ ॥
ଶ୍ରୀଗୁରୁ ଗୋବିନ୍ଦ ପଦ୍ମରେ । ସେବା ମୋ ରହୁ ନିରନ୍ତରେ ॥
କୃଷ୍ଣ ମୋ ଅବଧୂତ ଗୁରୁ । ଶିକ୍ଷା ପାଇଲି ତାଙ୍କଠାରୁ ॥
ଏଣୁ ସେ ଶ୍ରୀଗୁରୁଙ୍କ ନାମ । ଏହା ମୁଁ ନ ଜାଣେ ଅଧମ ॥
କହେ ଗୋବିନ୍ଦ ଅବଧୂତ । ମହା ନିତ୍ୟରେ ଲୀନ ଚିତ୍ତ ॥
ସୁଜନ ଜନ ଅଙ୍ଗୀକରି । ତାହାଙ୍କ ପାଦେ ଚିତ୍ତ ରହୁ ॥
ଏହୁ ପରମ ରସବାଣୀ । ସଂସାରୁ ତର ପ୍ରାଣୀ ଶୁଣି ॥

ଇତି ଶ୍ରୀ ରତ୍ନପାଦୁକା ଉଦ୍ଧବସମ୍ବାଦେ ଶୁକପରୀକ୍ଷିତକଥନେ ଉଦ୍ଧବ-
ନିତ୍ୟସ୍ଥଳ ଗମନେ ନାମ ଦ୍ୱାଦଶୋଽଧ୍ୟାୟଃ ।



## ତ୍ରୟୋଦଶ ଅଧ୍ୟାୟ ।

ପରୀକ୍ଷିତ ଉବାଚ ।

ଶୁଣ ପରୀକ୍ଷ ଦଣ୍ଡଧାରୀ । ମୁନି ଚରଣ ତଳେ ପଡ଼ି ॥
ବୋଲଇ ଶୁଣ ମୁନିବର । ତୁମ୍ଭେ କହିଲ ଜ୍ଞାନସାର ॥
ଅବର କଥାଏ କହିବ । ସଂଶୟ ମୋ ହୃଦୁ ଫେଡ଼ିବ ॥
ସେତ ପରମଜ୍ୟୋତି ହୋଇ । ରତ୍ନ ପାଦୁକା ନାମ କହି ॥

କିରୂପେ ସେ ନାମ ବହିଲେ । କେଉଁ ଯୁଗରେ ଏହା କଲେ ॥
ଏ କଥା ଶୁଣିବାକୁ ମନ । କହ ହେ ବ୍ୟାସଙ୍କ ନନ୍ଦନ ॥
ଶୁଣିଣ ମୁନି ଶୌନକ । କହନ୍ତି ପାଦୁକାର ନାମ ॥
ଶୁଣ ପରୀକ୍ଷିତ ନୃପତି । ଏ କଥା ଗୁହ୍ୟ ଯେ ଅଟଇ ॥
ଦୁର୍ଗମ ଏ ପାଦ ଲକ୍ଷଣ । କେହି ନ ଜାଣନ୍ତି ସଜନ ॥
ତୁ ଯେଣୁ ଭାଗ୍ୟବନ୍ତ ହେଲୁ । ଏକଥା ମୋତେ ପଚାରିଲୁ ॥
ତୁ ଯେଣୁ ବିଷ୍ଣୁରେ ସେବିନେଲା । ଏବେ କହିବା ଶୁଣ ତାହା ॥
ଅଦ ଅପୂର୍ବ ଏ ସଂସାର । ହିରଣ୍ୟନାମେ ଅବତାର ॥
ସେ ଦୈତ୍ୟ ରୁଦ୍ରକୁ ସେବିଲା । ବଡ଼ପ୍ରତାପୀ ସେ ହୋଇଲା ॥
ଏମନ୍ତେ ବରଅଛି ପାଇ । ଧାତା ସୃଜନେ ମୃତ୍ୟୁ ନାହିଁ ॥
ଛପନ କୋଟି ଜୀବରେଣ । ନାନାବିଧ ଶସ୍ତ୍ର ଅରପୁଣ ॥
ଏମାନେ ମରଣ ତା ନାହିଁ । ହର ଏମନ୍ତେ ବର ଦେଇ ॥
ଏମନ୍ତେ କେତେକାଳ ଗଲା । ତିନ ପୁରକୁ ସେ ଜିଣିଲା ॥
ଏମନ୍ତେ ପ୍ରତାପୀ ଦଇତ । ତାହାର କୁଳେ ସୁତ ଜାତ ॥
ତା ନାମ ପ୍ରହଲ୍ଲାଦ ହୋଇ । ବିଷ୍ଣୁରେ ଭକତ ଅଟଇ ॥
ନୃସିଂହ ଅବତାର ହେଲେ । ହିରଣ୍ୟ ଦୈତ୍ୟକୁ ନାଶିଲେ ॥
ଶୁଣ ପରୀକ୍ଷିତ ପଚାରଇ । ହେ ମୁନି ସଂଶୟ ଲାଗଇ ॥
ବ୍ରହ୍ମାସୃଜନେ ହୋଇ ନାଶ । ନୁହଇ ହିରଣ୍ୟ ବିଷୟ ॥
ହରି ତ ଜନମ ହୋଇଲେ । କେବଣ ଅଙ୍ଗଶ୍ୟ ଘେନିଲେ ॥
ଏକଥା କହ ମୁନି ମୋତେ । ପୁଚ୍ଛଇ ତୋର ପାଦଗତେ ॥
ଏମନ୍ତ ଶୁଣି ତା ବଚନ । କହନ୍ତି ବ୍ୟାସଙ୍କ ନନ୍ଦନ ॥
ହରି ନୃସିଂହ ଅବତାର ହୋଇ । ନର ଯେ ସିଂହରୂପ ହୋଇ ॥
କଣ୍ଠରୁ ତଳକୁ ମନୁଷ୍ୟ । ମସ୍ତକ ସିଂହର ସାଦୃଶ ॥
ହିରଣ୍ୟ ନଖେ ବିଦାରିଲେ । ବ୍ରହ୍ମା ସୃଜନେ ସେ ନୋହିଲେ ॥
ଏମନ୍ତେ ହିରଣ୍ୟ ନାଶନ । ଶୁଣ ସୁମନେ ହେ ସଜନ ॥
ତା ପୁତ୍ର ପ୍ରହଲ୍ଲାଦ ହୋଇ । ସେ ବିଷ୍ଣୁସେବକ ଅଟଇ ॥
ତାହାର ପୁତ୍ର ସେ ହୋଇଲା । ପୃଥିବୀ ନକ୍ଷତ୍ର ସେ କଲା ॥

ବୈରୋଚନ ତାର ନାମ । ଷବିସ୍ୱେ ନୋହେ ଷରଷମ ॥
ମାଳଣୀ କନ୍ୟାରୂପ ହୋଇ । ହର ଯେ ତାହାକୁ ନାଶଇ ॥
ତାତଙ୍କ ସୂନ ଜନ୍ମିଲା । ବଳୀ ତାହାର ନାମହେଲା ॥
ସେ ରାଜା ବଡ଼ାଇ ଧାର୍ମିକ । ଧ୍ୟାନେ ଜିଣିଲା ତିନିଲୋକ ॥
ସାମର୍ଥ ଶେଷଏଣେ ହୋଇ । ଅବେକ ପଣେ ଶୂର ନୋହି ॥
ଦାନ ସେ ଦଅଇ ଭୂଇତେ । ଇନ୍ଦ୍ର ହେବାକୁ ପାଞ୍ଚ ଚଳେ ॥
ତାହାର ପ୍ରତିଜ୍ଞା ଶୁଣିଣ । ଇନ୍ଦ୍ରଭ୍ରଲଙ୍କ ମନେ ମନ ॥
କହିଲେ ନାରାୟଣ ଯାଣ । ମୋତେ ତୁ ରକ୍ଷ ପୀତବାସ ॥
ବଳୀ ମୋ ପଦ ଘେନିବାକୁ । ଦାନଦେଉଛି ବ୍ରାହ୍ମଣଙ୍କୁ ॥
ଏମନ୍ତ ତାର ବାଣୀ ଶୁଣି । ହରି ଚଳିଲେ ତତକ୍ଷଣି ॥
କଶ୍ୟପ ପୁତ୍ରେ ଅବତରି । ବାହ୍ମଣ ରୂପରେ ଶ୍ରୀହରି ॥
ଅଙ୍ଗୁଳୀ ଦ୍ୱାଦଶ ପ୍ରମାଣ । ବାମନରୂପ ନାରାୟଣ ॥
ପଇତା ନବଗୁଣ ହୋଇ । ଟୀକା ଯେ ଦ୍ୱାଦଶ ଅଟଇ ॥
ଛତା ଯେ ତମ୍ବାପଣ କରେ । ଗଡ଼ୁ ଯେ ଲମ୍ବଇ ପଯୃରେ ॥
ହିକଛ ଯୋଡ଼ା ଯେ ମୋହୁଛି । ବେଶ କି ଜଗତ ନନ୍ଦୁଛି ॥
ଏମନ୍ତ ରୂପ ନାରାୟଣ । ଚଳିଲେ ବଳୀ ପାଶେ ପୁଣ ॥
ବେଦ ଅଧ୍ୟାନ ଧ୍ୱନିକଲେ । ଶୁଣିଣ ବଳୀ ଯେ କମ୍ପିଲେ ॥
ବ୍ରାହ୍ମଣ ମୁଖ ଚାହିଁ ଭଣି । କସ ମାଗୁଛୁ ଦ୍ୱିପ୍ରମଣି ॥
ଶୁଣି ବୋଲନ୍ତି ନାରାୟଣ । ରାଜନ ଦେବୁ ମୋତେ ଦାନ ॥
ଶୁଣି ବୋଲନ୍ତି ମହାଦାନୀ । ଯାହାମାଗିବୁ ଦେବି ପୁଣି ॥
ଶୁଣି ସେ ବ୍ରାହ୍ମଣ ବୋଲଇ । ସତ୍ୟ ତୁ କର [illegible] ॥
ଶୁଣି ରାଜନ ସତ୍ୟ କଲା । ଦାନ ତୁ ମାଗ ହେ ବୋଇଲା ॥
ଶୁଣି ବୋଲନ୍ତି ନାରାୟଣ । ମୋତେ ତୁ ଦେବୁ ଭୂମିଦାନ ॥
ମୋ ପାଦେ ତିନିପାଦ ଦେଲେ । ଆଉ ମୋ କାର୍ଯ୍ୟ ନାହିଁ ଭଲେ ।
ତା ଶୁଣି ରାଜା ସତ୍ୟ କଲା । ତାହାଙ୍କ ମାୟା ନ ଜାଣିଲା ॥
ବୋଲଇ ଘେନ ହେ ବ୍ରାହ୍ମଣ । କେତେକପାଦ ନିଅ ଦାନ ॥
ଶୁଣି ବାମନ ତୋଷ ହୋଇ । ପାଦକେ ପୃଥିବୀ ଚାଳଇ ॥

ବାମନ ବୋଲଇ ବଚନ । ଅବକପାଦ ଦଅ ଦାନ ॥
ଦେଖିଣ ବଳୀ ଚମତ୍କାର । ଦେଖାଇ ଦେଲା ସ୍ୱର୍ଗପୁର ॥
ବାମନ ପୁଣି ପାଦ ଦେଲା । ସ୍ୱର୍ଗ ମର୍ତ୍ତ୍ୟ ଦେ ହୁଇଲା ॥
ଶୁଣି ବୋଲନ୍ତି ନାରାୟଣ । ଦିଅ ତୁ ଅରପାଦ ଦାନ ॥
ଶୁଣି ସୁଜନ ପଚାରଇ । ଅବର ପାଦ ତୋର କାହିଁ ॥
ଶୁଣିଣ ନାଭିରୁ ସେ ପାଦ । କାଢ଼ିଲେ ପ୍ରଭୁ ପଦ୍ମନାଭ ॥
ଦେଖିଣ ବଳୀ ଚମତ୍କାର । ସତ୍ୟେ ପାତିଲା ନେଇ ଶିର ॥
ତାହାର ଶିରେ ପାଦଦେଲେ । ପାତାଳପୁରକୁ ଚପିଲେ ॥
ରଖିଲେ ପାତାଳରେ ନେଇ । କାଳେ ସେ ଇନ୍ଦ୍ର ହୋଇବଇ ॥
ଯହୁଁ ତା ଶିରେ ପାଦଦେଲେ । ଏ ବରେ ବଳୀ ଯେ ଗମିଲେ ॥
ବୋଇଲା ଶୁଣ ଭଗବାନ । ପାଦୁକା ହେଉ ଅରନାମ ॥
ଶୁଣି ବୋଇଲେ ନାରାୟଣ । ଯାହା ତୁ ମାଗିଲୁ ସୁଜନ ॥
ଏ ପାଦଭକ୍ତ ହୃଦେ ଥିବ । ପରମରୂପ ପାଲଟିବ ॥
ଏରୂପେ ପାଦୁକା ଯେ ନାମ । ଜଗତେ ହେଲା ଅନୁପାମ ॥
ଉଦ୍ଧବ ଦ୍ୱାରକାରେ ଥିଲା । କାଳେ ଗୋବିନ୍ଦଙ୍କୁ ପୁଛିଲା ॥
ଧର୍ମ ଯେ ଅର୍ଥ କାମ ମୋକ୍ଷ । ଏ ଚାରି କହ ହେ ପ୍ରତ୍ୟକ୍ଷ ॥
ତହିଁରେ ମନ ନ ପଶିଲା । ସାର ଉଦ୍ଧାର ପଚାରିଲା ॥
ତା ଦେହେ କହିଦେଲେ ହରି । ରତ୍ନ ପାଦୁକା ବୋଲି କରି ॥
ତାହା ଠୈ ଉଦ୍ଧବ ଧରିଲା । ସେରୂପ ପ୍ରସନ୍ନ ହୋଇଲା ॥
ଏମନ୍ତ କହି ମହାମୁନି । କହିଲେ ହରିଭାବ ଯେଣି ॥
ଶୁଣି ପରୀକ୍ଷିତ ତୋଷ ହେଲା । ମୁନିଙ୍କ ଚରଣେ ପଡ଼ିଲା ॥
ଉଠିଣ ଯୋଡ଼ଇ ବେନିକର । ପ୍ରଣମ୍ୟ କରେ ଶତେବାର ॥
ମୁନି ବଦନ ଚାହିଁ ଧୀରେ । ସୁଜନ ବସିଲା ନିର୍ଭରେ ॥
କହନ୍ତି ଶୁକ ମୁନିବର । ସୁଜନ ଶୁଣ ମୋ ବଚର ॥
ବ୍ରହ୍ମାର ଘରେ ଚଉ ଦଅ । ଭବଫସାରୁ ପାର ହୁଅ ॥
ସୁଜନ ମୁନି ତହୁଁ ଶୁଣି । ବ୍ରହ୍ମାରେ ଚଉ ଦେଲା ପୁଣି ॥
ନିମଗ୍ନ ହୋଇଣ ବସିଲା । ତକ୍ଷଣେ ସମାଧି ଲାଗିଲା ॥

ମୁନିଗଣ ଯେ କହିଛନ୍ତି । ସର୍ପ ଦଂଶିଲା ପାଦଗତ ॥
ତେଣେ ଯେ ବ୍ରହ୍ମେ ନିମଜ୍ଜିଲା । ସର୍ପଙ୍କ ଦାଉ ନ ଲାଗିଲା ॥
ବ୍ରହ୍ମା ଯେ ଶାପରୁ ଦଂଶିଲା । ଜଗତେ ଅପବାଦ ହେଲା ॥
ବୋଲନ୍ତି ପରୀକ୍ଷ ରାଜାକୁ । ସର୍ପ ଯେ ଦଂଶିଲା ତାହାକୁ ॥
ଏମନ୍ତେ ମୂର୍ଖଜନ କହି । ତାହାର ତତ୍ତ୍ୱ ନ ଜାଣଇ ॥
ପରୀକ୍ଷ ରାଜା ଅନ୍ତକାଳେ । ଶାଖା ତାହାର ନିତ୍ୟେ ଗଲେ ॥
ରହିଲେ ଷୋଡ଼ଦଳ ପରେ । ସେ ସେବା କରଇ ସେଠାରେ ॥
ଦହନ କରି ସେ ଶବକୁ । ମୁନି ଚଳିଲେ ଆଶ୍ରମକୁ ॥
ଯେ ଯାହା ଆଶ୍ରମେ ରହିଲେ । ନୈମିଷ ଅରଣ୍ୟର ମେଳେ ॥
ଶୁକ ଅଶେଷ ଅବତାର । ତେଣୁ ବହିଲେ ଜ୍ଞାନସାର ॥
ସେ ଶୁକମୁନିଙ୍କ ପଶ୍ଚରେ । ସେବା ମୋ ରତ୍ନ ନିରନ୍ତରେ ॥
ପରୀକ୍ଷିତର ସୁତ ଥିଲା । ସେ ସର୍ପ ଯଜ୍ଞ ଆରମ୍ଭିଲା ॥
ଅନେକ ସର୍ପ କଲା ହତ । କେ ସଂଖ୍ୟା କହିବ ତାହା ତ ॥
ଶୂନ୍ୟରୁ ଶବଦ ଶୁଭିଲା । ଶୂନ୍ୟ ଶବଦେ ଶାନ୍ତି ହେଲା ॥
ସୁଜନେ ଶୁଣ ମନ ଦେଇ । କହୁଛି ଚରଣେ ଧନୋଇ ॥
ମୋ ଗୁରୁ ଅଟଇ ପାମର । ତେଣୁ ଜଣାଇଲି ସମୁର ॥
କହେ ଗୋବିନ୍ଦ ଅବଧୂତ । ନୃସିଂହ ପାଦେ ଦେଇ ଚିତ୍ତ ॥

ଇତି ଶ୍ରୀ ରତ୍ନପାଦୁକା ଗୀତ ପରବନ୍ଧେ ସ୍ୱଜନ ମୁକ୍ତି ଲକ୍ଷଣ
ମୁନି ଆଶ୍ରମ ଗମନେ ନାମ ତ୍ରୟୋଦଶୋଽଧ୍ୟାୟଃ ।



କଟକ ଅରୁଣୋଦୟ ପ୍ରେସରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ